ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ମଣ୍ଟେରୋଜର ଉପକଥା





ଗ୍ରନ୍ଥ ମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ମଣ୍ଟରୋଜର ଉପକଥା

[ ସାର୍ ୱାଲ୍‌ଟର୍ ସ୍କଟ୍‌ଙ୍କ
'Legend of Montrose'
ବହିର ସଂକ୍ଷିପ୍ତ ଓଡ଼ିଆ ରୂପାନ୍ତର । ]

ଅନୁବାଦକ :
ଶ୍ରୀ ସତ୍ୟନାରାୟଣ ପଟ୍ଟନାୟକ, ଏମ୍.ଏ

ଗ୍ରନ୍ଥମନ୍ଦିର

# ପୂର୍ବାଭାସ

ସପ୍ତଦଶ ଶତାବ୍ଦୀର ସ୍କଟଲାଣ୍ଡ। ଉଚ୍ଚ ପର୍ବତମାଳା ଦ୍ୱାରା ଏହା ବ୍ରିଟିଶ୍ ଦ୍ୱୀପପୁଞ୍ଜରୁ ବିଚ୍ଛିନ୍ନ। ଏହାର ଅଧିବାସୀମାନେ ନିଜକୁ ଏକ ସ୍ୱତନ୍ତ୍ର ଜାତି ବୋଲି ମନେକରନ୍ତି। ଏହା ଦୁଇ ଭାଗରେ ବିଭକ୍ତ— ଉଚ୍ଚଭୂମି ଅଞ୍ଚଳ ଓ ନିମ୍ନଭୂମି ଅଞ୍ଚଳ। ଉଚ୍ଚଭୂମି ଅଞ୍ଚଳ ପାହାଡ଼ ଓ ପର୍ବତପୂର୍ଣ୍ଣ, ସଂକୀର୍ଣ୍ଣ ପାହାଡ଼ିଆ ରାସ୍ତାଦେଇ ଅଧିବାସୀମାନେ ଯାତାୟତ କରନ୍ତି। ଖୁବ୍ ଅଳ୍ପ ଲୋକ ସେ ପଥ ସହ ସଂପୂର୍ଣ୍ଣ ପରିଚିତ। ସ୍ଥାନେ ସ୍ଥାନେ ଚୋର ତସ୍କର ମଧ୍ୟ ଦେଖାଯାନ୍ତି। ଏକାକୀ ଯିବା ନିରାପଦ ନୁହେଁ।

ଉଚ୍ଚଭୂମିଅଞ୍ଚଳର ଅଧିବାସୀମାନେ ସାହସୀ, କିନ୍ତୁ ଗର୍ବୀ। ସେମାନେ ଛୋଟ ଛୋଟ ଦଳରେ ବିଭକ୍ତ। ପ୍ରତ୍ୟେକ ଦଳ ଏକ ଦଳପତିଦ୍ୱାରା ପରିଚାଳିତ। ଦଳର ପ୍ରତ୍ୟେକ ବ୍ୟକ୍ତି ଦଳପତିଙ୍କୁ ଶ୍ରଦ୍ଧା ଓ ସମ୍ମାନ ଦେଖାନ୍ତି। ଏହି ଦଳପତିମାନଙ୍କ ମଧ୍ୟରେ ଆର୍ଗାଇଲ୍‌ର ମାର୍କୁଇସ୍ ବିଶେଷ ଶକ୍ତିଶାଳୀ। ସେ ତାଙ୍କ ଅନୁଚରମାନଙ୍କ ସହ ଆର୍ଗାଇଲ୍‌ର ଇନ୍‌ଭେର୍ଣ୍ଣରିରେ ରହନ୍ତି। ଆର୍ଗାଇଲ୍ ଚତୁଃପାର୍ଶ୍ୱରେ ଉଚ୍ଚ ପର୍ବତମାଳା ଅବସ୍ଥିତ। ତେଣୁ ମାର୍କୁଇସ୍ ସର୍ବଦା ଶତ୍ରୁଭୟଶୂନ୍ୟ। ତାଙ୍କର ଧନ-ସମ୍ପଦ ଓ ସୈନ୍ୟବଳ ଯୋଗୁ ଅନ୍ୟ ଦଳପତିମାନେ ତାଙ୍କୁ ଭୟ କରନ୍ତି ଓ ସମ୍ମାନ ଦେଖାନ୍ତି। ଅନ୍ୟ କେତେକ ମଧ୍ୟ ତାଙ୍କ ପ୍ରାଧାନ୍ୟ ପ୍ରତି ଈର୍ଷା କରନ୍ତି।

ନିମ୍ନଭୂମି ଅଞ୍ଚଳ ଉଚ୍ଚଭୂମିର ଦକ୍ଷିଣରେ ଅବସ୍ଥିତ। ଏହା ତୃଣଭୂମି ଓ ଛୋଟ ଛୋଟ ପାହାଡ଼ରେ ପୂର୍ଣ୍ଣ। ଏହାର ସମତଳ ଅଞ୍ଚଳ ଶସ୍ୟଶାଳୀ। ଏହି ଅଞ୍ଚଳ ସ୍କଟ୍‌ଲାଣ୍ଡର ଭଣ୍ଡାର ଘର। ଉଚ୍ଚଭୂମିର ଅଧିବାସୀମାନେ ଅନେକ ସମୟରେ ଏହି ଅଞ୍ଚଳ ଆକ୍ରମଣକରି ଧନ ସମ୍ପଦ ଲୁଣ୍ଠନ କରନ୍ତି। ତେଣୁ ନିମ୍ନଭୂମି ଅଞ୍ଚଳର ଅଧିବାସୀମାନେ

ଉଚ୍ଚଭୂମିର ଅଧିବାସୀମାନଙ୍କୁ ଭୟ କରନ୍ତି। ୧୬୪୨ ଖ୍ରୀଷ୍ଟାବ୍ଦରେ କେତେକ ଇଂରେଜ ଇଂଲଣ୍ଡ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ। ସମଗ୍ର ଇଂଲଣ୍ଡ ରାଜାଙ୍କ ସପକ୍ଷ ଓ ବିପକ୍ଷ ଏପରି ଦୁଇଦଳରେ ବିଭକ୍ତ ହୋଇଥିଲା। ବିଦ୍ରୋହ ଆରମ୍ଭରେ ରାଜାଙ୍କର ସୈନ୍ୟମାନେ ବିଦ୍ରୋହୀମାନଙ୍କୁ କେତେକ ଯୁଦ୍ଧରେ ପରାସ୍ତ କରିଥିଲେ। କିନ୍ତୁ କ୍ରମେ ବିଦ୍ରୋହୀମାନେ ଅଧିକ ଶକ୍ତିଶାଳୀ ହୋଇ ରାଜାଙ୍କ ସୈନ୍ୟଙ୍କୁ ପରାସ୍ତ କରିବାକୁ ଲାଗିଲେ।

ଯୁଦ୍ଧ ଆରମ୍ଭବେଳେ ସ୍କଟଲାଣ୍ଡର କେତେକ ଲୋକ ରାଜାଙ୍କ ସପକ୍ଷରେ ଓ ବିପକ୍ଷରେ ଥିଲେ ମଧ୍ୟ ସମଗ୍ର ଦେଶ ସିଧାସଳଖ ଏଥିରେ ଭାଗ ନେଇନଥିଲା। କିନ୍ତୁ ଯେତେବେଳେ ନିମ୍ନଭୂମିଅଞ୍ଚଳର ଅଧିବାସୀମାନେ ବିଦ୍ରୋହୀମାନଙ୍କୁ ସୈନ୍ୟ ସାହାଯ୍ୟ ଦେଲେ ଓ ମାର୍କୁଇସ୍ ତାଙ୍କୁ ସାହାଯ୍ୟ କଲେ, ଉଚ୍ଚଭୂମି ଅଞ୍ଚଳର ଅନ୍ୟାନ୍ୟ ଦଳପତିମାନେ ମାର୍କୁଇସ୍‌ଙ୍କ ଏହି କାର୍ଯ୍ୟକୁ ସମର୍ଥନ କଲେ ନାହିଁ। ଏହି ପରିସ୍ଥିତିରେ ରାଜାଙ୍କର ମିତ୍ରମାନେ ବିଚଳିତ ହେଲେ ଓ ରାଜାଙ୍କୁ ସାହାଯ୍ୟ କରିବା ନିମିତ୍ତ ଉଚ୍ଚଭୂମିର ଅନ୍ୟ ଦଳପତିମାନଙ୍କୁ ଅନୁରୋଧ କଲେ। ଅଧିକାଂଶ ଦଳପତି ରାଜାଙ୍କ ପକ୍ଷରେ ରହିଲେ। ସେମାନେ ଏହି ସୁବିଧାରେ ନିମ୍ନଭୂମି ଅଞ୍ଚଳରେ ଲୁଣ୍ଠନ ଓ ଗୃହଦାହ ଆରମ୍ଭ କରିଦେଲେ।

କିନ୍ତୁ ଉଚ୍ଚଭୂମି ଅଞ୍ଚଳର ଅଧିବାସୀମାନେ ଶୃଙ୍ଖଳିତ ନଥିଲେ। ସେମାନଙ୍କର ଦଳପତିମାନେ ପରସ୍ପର ମଧ୍ୟରେ କଳି କରୁଥିଲେ। ସେମାନଙ୍କ ମଧ୍ୟରେ ଏକତା ରଖିବାକୁ ଜଣେ ପ୍ରଭାବଶାଳୀ ବ୍ୟକ୍ତିଙ୍କର ଆବଶ୍ୟକତା ଥିଲା। କିନ୍ତୁ ଦଳପତିମାନେ ପରସ୍ପରକୁ ଏପରି ଈର୍ଷା କରୁଥିଲେ ଯେ ସେମାନଙ୍କ ମଧ୍ୟରୁ କେହି ଜଣେ ନେତୃତ୍ୱ ନେବା ସମ୍ଭବ ନଥିଲା। କେତେକ ମୁଷ୍ଟିମେୟ ପ୍ରଭାବଶାଳୀ ବ୍ୟକ୍ତିଙ୍କ ମଧ୍ୟରୁ ମଣ୍ଟରୋଜର ଆର୍ଲ ଜେମ୍‌ସ୍ ଗ୍ରାହାମ୍‌ଙ୍କୁ ଉଚ୍ଚଭୂମିର ଦଳପତିମାନେ ମାନୁଥିଲେ। ତାଙ୍କର ବୟସ ତିରିଶବର୍ଷ। ସେ ଜ୍ଞାନୀ ଓ ବୀର ଥିଲେ। ତାଙ୍କର ଭଦ୍ର ବ୍ୟବହାରରେ ସମସ୍ତେ ସନ୍ତୁଷ୍ଟ ଥିଲେ। ସେ ଜଣେ ବୁଦ୍ଧିମାନ୍ ଓ ଦକ୍ଷ ସେନାପତି ଥିଲେ। ସର୍ବୋପରି ସେ

ଆର୍ଗାଇଲ୍‌ର ମାର୍କୁଇସ୍‌ଙ୍କର ଜଣେ ପୁରୁଣା ଶତ୍ରୁ ଥିଲେ। ତେଣୁ ଉଚ୍ଚ-ଭୂମିର ଦଳପତିମାନେ ତାଙ୍କୁ ସେମାନଙ୍କ ନେତାରୂପେ ମନୋନୀତ କଲେ।

ଜେମ୍‌ସ୍ ଗ୍ରାହାମ୍ ରାଜାଙ୍କୁ ଦେଖାକଲେ ଏବଂ ସ୍କଟଲାଣ୍ଡରେ ସୈନ୍ୟଚାଳନା ନିମିତ୍ତ ଅନୁମତି ମାଗିଲେ। ରାଜା ଆନନ୍ଦରେ ତାଙ୍କୁ କ୍ଷମତାପତ୍ର ଦେଲେ। ରାଜାଙ୍କଠାରୁ ବିଦାୟ ନେବାପରେ ଜେମ୍‌ସ୍ ଅନ୍ତର୍ଦ୍ଧାନ ହୋଇଗଲେ। ସେ କେଉଁଆଡ଼େ ଗଲେ ଓ ତାଙ୍କର କ'ଣ ହେଲା କେହି ଜାଣିଲେ ନାହିଁ। କେହି କେହି କହିଲେ ସେ ଛଦ୍ମବେଶରେ ବୁଲୁଛନ୍ତି। କେହି କେହି ମଧ୍ୟ କହିଲେ ଯେ ତାଙ୍କର ମୃତ୍ୟୁ ହୋଇଛି। ତାଙ୍କର ଶତ୍ରୁମାନେ ସାବଧାନ ହେଲେ ଏବଂ ଉଚ୍ଚଭୂମିର ମିତ୍ରମାନେ ତାଙ୍କର ଉପସ୍ଥିତି ଅପେକ୍ଷାରେ ରହିଲେ।

## କ୍ୟାପ୍‌ଟେନ୍ ଦାଲ୍‌ଗେଟି

ବସନ୍ତଋତୁର ଏକ ମନୋରମ ସଂଧ୍ୟା। ଉଚ୍ଚଭୂମିର ଏକ ଗିରିପଥରେ ଜଣେ ଯୁବକ ଅଶ୍ୱ-ପୃଷ୍ଠରେ ଧୀରେ ଧୀରେ ଗତି କରୁଥିଲେ। ତାଙ୍କ ସହ ଦୁଇଜଣ ଭୃତ୍ୟ ଥିଲେ। ସମସ୍ତଙ୍କ ନିକଟରେ ଖଡ୍‌ଗ ଓ ପିସ୍ତଲ୍ ଥିଲା। ପର୍ବତର ବନ୍ଧୁର ପଥରେ ସୁଦୀର୍ଘ ପ୍ରସ୍ତର ଶ୍ରେଣୀର ଧାରେ ଧାରେ ସେମାନେ ଅଗ୍ରସର ହେଉଥିଲେ। ଗିରିପଥର ଅର୍ଦ୍ଧପଥ ଅତିକ୍ରମ କରିବାପରେ ଜଣେ ଅଶ୍ୱାରୋହୀ ସମ୍ମୁଖରୁ ଆସିବାର ସେମାନେ ଦେଖିପାରିଲେ। ଅଶ୍ୱାରୋହୀ ଏକ ବଳଶାଳୀ ଅଶ୍ୱ-ପୃଷ୍ଠରେ ଧୀରେ ଧୀରେ ଅଗ୍ରସର ହେଉଥିଲେ। ସେ ଚିତ୍ରିତ ପକ୍ଷୀପୁଚ୍ଛର ଏକ ଶିରସ୍ତ୍ରାଣ ଓ ସାଞ୍ଜୁ ପରିଧାନ କରିଥିଲେ। କଟି ଦେଶର ଏକପାର୍ଶ୍ୱରେ ସୁଦୀର୍ଘ ତରବାରି, ଅନ୍ୟପାର୍ଶ୍ୱରେ ଏକ ଗୁପ୍ତି ଓ ପୃଷ୍ଠଦେଶରେ ଏକ ବନ୍ଧୁକ ଝୁଲୁଥିଲା। ତାଙ୍କର ବୟସ ପ୍ରାୟ ଚାଳିଶବର୍ଷ। ତାଙ୍କ ପରିଧେୟରୁ ସେ ଏକ ସୈନିକ ଭଳି ଦିଶୁଥିଲେ। ତାଙ୍କ ମୁଖର କ୍ଷତଚିହ୍ନ ତାଙ୍କୁ ଜଣେ ଅଭିଜ୍ଞ ସୈନିକ ରୂପେ ପରିଚୟ ଦେଉଥିଲା। ପ୍ରାୟ ତିରିଶ ଗଜ ବ୍ୟବଧାନରେ ଉଭୟପକ୍ଷ ଅସ୍ତ୍ର ଉନ୍ମୁକ୍ତ କରି ପରସ୍ପରକୁ କିଛି

ସମୟ ନିରୀକ୍ଷଣ କଲେ। ଯୁବକ ପଚାରିଲେ— ତୁମେ କେଉଁ ପକ୍ଷ ସମର୍ଥନ କରୁଛ ? ସୈନିକ କହିଲେ— ପ୍ରଶ୍ନକର୍ତ୍ତା ବଳଶାଳୀ। ତେଣୁ ପ୍ରଥମେ ସେ କେଉଁ ପକ୍ଷର କହିବା ଉଚିତ।

ଯୁବକ ନିଜେ ରାଜାଙ୍କ ପକ୍ଷର ଲୋକ ବୋଲି କହିଲେ। ସୈନିକ ସେ ତାଙ୍କ ନିଜ ପକ୍ଷର ବୋଲି ଉତ୍ତର ଦେଲେ।

ଯୁବକ— ତାହା କେଉଁ ପକ୍ଷ— ରାଜାଙ୍କ ପକ୍ଷ କିମ୍ବା ଶତ୍ରୁପକ୍ଷ ?

ସୈନିକ— ମୁଁ ତାହା ଏ ପର୍ଯ୍ୟନ୍ତ ଠିକ୍ କରିନାହିଁ।

ଯୁବକ— ଯେତେବେଳେ ଦେଶର ପ୍ରତ୍ୟେକ ବ୍ୟକ୍ତି କୌଣସି ନା କୌଣସି ପକ୍ଷ ଅବଲମ୍ବନ କରିଛନ୍ତି ତୁମେ ସେଥିରୁ ବାଦ୍‌ଯିବ କିପରି ?

ସୈନିକ— ଆପଣ ନିଶ୍ଚୟ ମୋତେ ଅପମାନିତ କରୁନାହାନ୍ତି। ଯୁବକ ସମୟରେ ମୁଁ ଏକ କଲେଜରେ ଶିକ୍ଷା ଲାଭ କରିଥିଲି। ବିଭିନ୍ନ ଯୁଦ୍ଧକ୍ଷେତ୍ରରେ ବହୁବାର ଯୋଗ ଦେଇଛି। ଆପଣମାନେ ଯଦି ମୋତେ ଅପମାନିତ କରିବାକୁ ଚାହାନ୍ତି ତେବେ ଆପଣମାନଙ୍କ ସହ ଯୁଦ୍ଧ ନିଶ୍ଚିତ। ଅନ୍ୟପକ୍ଷରେ ଯଦି ଆପଣମାନେ ଏ ବିଷୟରେ ନିର୍ଦ୍ଦିଷ୍ଟ ମତ ପୋଷଣ ପାଇଁ ମୋ ସଙ୍ଗେ କଥାବାର୍ତ୍ତା କରନ୍ତି ତେବେ ଅଲଗା କଥା।

ଯୁବକ କଥାବାର୍ତ୍ତା କରିବାପାଇଁ ଖୁସିରେ ରାଜିହେଲେ ଏବଂ ନିଜ କଥାରେ ତାଙ୍କୁ ପ୍ରଭାବିତ କରିବାର ଆଶା ମଧ୍ୟ ପୋଷଣକଲେ। ସେ ସୈନିକଙ୍କୁ କହିଲେ— ପ୍ରାୟ ତିନିମାଇଲ୍ ଦୂରରେ ବାସକରୁଥିବା ଜଣେ ବନ୍ଧୁଙ୍କ ନିକଟକୁ ଯାଉଛନ୍ତି। ସେ ଗଲେ ସେଠାରେ ନିଶ୍ଚୟ ଆଦର ଅଭ୍ୟର୍ଥନା ପାଇବେ। ସେଠାରେ ରାତ୍ରିଯାପନ କରି ଯଦି ନିଜର ମତ ବଦଳାଇ ନପାରନ୍ତି ତେବେ ସେ ଚାଲିଯିବେ।

ସୈନିକ ଜଣକ ତାଙ୍କର ପରିଚୟ ପଚାରିଲେ। ଯୁବକ କହିଲେ— ସେ ମେଣ୍ଟିଥର ଆର୍ଲ। ତାଙ୍କଠାରୁ କୌଣସି ବିପଦ ଆଶଙ୍କା ଅମୂଳକ। ସୈନିକ ଏହାଶୁଣି ବନ୍ଧୁକ କାନ୍ଧରେ ପକାଇଲେ ଓ ତାଙ୍କୁ ଅଭିବାଦନ କଲେ ଏବଂ କହିଲେ ଯେ ତାଙ୍କ ସଙ୍ଗେ ଥିବା ପର୍ଯ୍ୟନ୍ତ ସେ ତାଙ୍କର ଜଣେ ବନ୍ଧୁ ହୋଇ ରହିବେ। ସେ ନିଜେ କାପ୍‌ଟେନ୍ ଡାଲ୍‌ଗେଡି ବୋଲି ନିଜର ପରିଚୟ ଦେଲେ। ସେମାନେ ଏକତ୍ର

ଯାତ୍ରା ଆରମ୍ଭ କଲେ। ଯାତ୍ରା ସମୟରେ କାପ୍‌ଟେନ୍ ଡାଲ୍‌ଗେଟି ତାଙ୍କ ଜୀବନର ଅଭିଜ୍ଞତା ବର୍ଣ୍ଣନା କଲେ।

ଡାଲ୍‌ଗେଟିଙ୍କ ପିତା ଜଣେ ବିଭବଶାଳୀ ବ୍ୟକ୍ତି ଥିଲେ। ସେ ପିତାଙ୍କର ସମସ୍ତ ସମ୍ପତ୍ତି ଅପବ୍ୟୟ କରି ଜୀବନଯାପନ ନିମିତ୍ତ ଜଣେ ସୈନିକ ହେଲେ। ଇଉରୋପର ବିଭିନ୍ନ ଯୁଦ୍ଧକ୍ଷେତ୍ରରେ ଭିନ୍ନଭିନ୍ନ ସେନାପତିଙ୍କ ଅଧୀନରେ ଯୁଦ୍ଧ କରିଛନ୍ତି। କାହା ନିକଟରେ ଦୀର୍ଘଦିନ ଧରି କାର୍ଯ୍ୟ କରି ନାହାନ୍ତି। ସେ ବିଭିନ୍ନ ସୈନ୍ୟଦଳ ସମ୍ପର୍କରେ ଆସିଛନ୍ତି। ଦରମାହାର, ଚାକିରି-ସର୍ତ୍ତ କିମ୍ବା ଅଫିସରଙ୍କ ସହ କଳି ତାଙ୍କୁ ଚାକିରୀରେ ଦୀର୍ଘସ୍ଥାୟୀ କରିନାହିଁ। କିନ୍ତୁ ବହୁଦିନ ଧରି ସେନା-ଛାଉଣିର ଅଭିଜ୍ଞତା ସୈନ୍ୟମାନଙ୍କୁ ଯୁଦ୍ଧ ବିଷୟରେ ଶିକ୍ଷାଦେବାରେ ତାଙ୍କୁ ସାହାଯ୍ୟ କରିଛି।

ମେଣ୍ଟିଥର ଆର୍ଲଙ୍କ ମତରେ ସେ ଜଣେ ସାହସୀ ଓ ଅଭିଜ୍ଞ ସୈନ୍ୟହେତୁ ରାଜାଙ୍କୁ ସାହାଯ୍ୟ କରିବା ଉଚିତ। ଡାଲ୍‌ଗେଟିଙ୍କ ମତରେ କେଉଁ ପକ୍ଷ ଅବଲମ୍ବନ କରିବା ଉଚିତ ତାହା ସେ ଜାଣିବା ସମ୍ଭବପର ନୁହେଁ। କାରଣ ବିଦ୍ରୋହୀମାନଙ୍କ ମତରେ ରାଜା ସ୍ୱାର୍ଥପର ଓ ବିଚାରହୀନ। ସେ ସେଥିପାଇଁ ଦୁଇଟି ପ୍ରଶ୍ନର ଉତ୍ତର ଚାହୁଁଥିଲେ। ପ୍ରଥମଟି ହେଲା— କେଉଁ ପକ୍ଷ ଅବଲମ୍ବନ ତାଙ୍କ ପକ୍ଷରେ ସମ୍ମାନଜନକ ହେବ। ଦ୍ୱିତୀୟଟି ହେଲା— କେଉଁ ପକ୍ଷ ତାଙ୍କୁ ତାଙ୍କ କାର୍ଯ୍ୟ ପାଇଁ ଅଧିକ ଦରମା ଦେଇପାରିବ। ସତକଥା କହିବାକୁଗଲେ ସେ ଯେତିକି ଏ ବିଷୟରେ ବିଚାର କରୁଛନ୍ତି ରାଜାଙ୍କ ବିପକ୍ଷରେ ଯୁଦ୍ଧ କରିବା ନିମିତ୍ତ ସେତିକି ତାଙ୍କର ମତ ଦୃଢ଼ୀଭୂତ ହେଉଛି। ମେଣ୍ଟିଥ୍ ତାଙ୍କୁ ଏହାର କାରଣ ପଚାରିଲେ। ଡାଲ୍‌ଗେଟି କହିଲେ— ଉଚ୍ଚଭୂମି ଅଞ୍ଚଳରେ କେତେକ ରାଜାଙ୍କ ପକ୍ଷରେ ଯୁଦ୍ଧ କରିବେ, ଏହା ସତ। ସେଠାରେ ଅଧିବାସୀମାନେ ଯଦିଓ ସାହସ ଓ ବଳବାନ୍, ସେମାନଙ୍କ ଯୁଦ୍ଧ ପ୍ରଣାଳୀ ବିଶୃଙ୍ଖଳିତ। ସେମାନଙ୍କୁ ଯୁଦ୍ଧକୌଶଳ ଶିଖାଦେବା ଦ୍ୱାରା ସମୟ ଓ ଶକ୍ତିର ଅପଚୟ ମାତ୍ର ହେବ। ସେମାନେ ତାଙ୍କର ଦଳପତିଙ୍କୁ ମାନିବାରେ ଅଭ୍ୟସ୍ତ,

ତେଣୁ ଶିକ୍ଷାଦାନକାରୀଙ୍କୁ ସେମାନେ ମାନିବେ ନାହିଁ।

ମେଣ୍ଟିଥ୍ କହିଲେ ଯେ ଆଇରିସ୍ ସୈନ୍ୟମାନେ ରାଜାଙ୍କୁ ସମର୍ଥନ କରନ୍ତି ଏବଂ ସେମାନଙ୍କୁ ଶିକ୍ଷା ଦେବା ପାଇଁ ତାଙ୍କର ଜଣେ ଅଭିଜ୍ଞ କର୍ମଚାରୀ ଦରକାର। ଦାଲ୍‌ଗେଟି କହିଲେ– ଆଇରିସ୍‌ମାନେ ଶୃଙ୍ଖଳିତ, ତେଣୁ ସେମାନଙ୍କୁ ଶିକ୍ଷାଦେବା ଆନନ୍ଦଦାୟକ। ମେଣ୍ଟିଥ୍ ଦାଲ୍‌ଗେଟିଙ୍କୁ କହିଲେ– ତୁମେ ଯଦି ରାଜାଙ୍କ ପକ୍ଷରେ ରହିବ ତେବେ ତୁମକୁ ଆଇ-ରିସ୍ ସୈନ୍ୟବାହିନୀର ଦାୟିତ୍ୱରେ ରଖାଯିବ। ଦାଲ୍‌ଗେଟି ସେଥିରେ ସମ୍ମତ ହେଲେ, କିନ୍ତୁ କହିଲେ– ରାଜାଙ୍କର ଅର୍ଥର ଅନାଟନ ଘଟିଛି। ତେଣୁ ବିଦ୍ରୋହୀମାନଙ୍କ ଅପେକ୍ଷା ସେ ଅଧିକ ଦରମା ଦେଇ ପାରିବେନାହିଁ।

ଭୃତ୍ୟ ଆଣ୍ଡରସନ୍ ମେଣ୍ଟିଥ୍‌ଙ୍କ ଅନୁମତି ନେଇ କହିଲେ– ରାଜାଙ୍କର ଓ ଉଚ୍ଚଭୂମି ଅଞ୍ଚଳର ସେନାବାହିନୀ ଶୀଘ୍ର ନିମ୍ନଭୂମି ଅଧିକାର କରି ପ୍ରଚୁର ଅର୍ଥର ଅଧିକାରୀ ହେବ ଏବଂ ସେନାବାହିନୀର ସୈନ୍ୟ ଭାଗ୍ୟ ବଳରେ ଲର୍ଡ଼ କିମ୍ବା ଆର୍ଲ ପଦର ଅଧିକାରୀ ହେବେ। କିନ୍ତୁ ବିଦ୍ରୋହୀ ପକ୍ଷ ଅବଲମ୍ବନ କଲେ କେବଳ ଦରମା ଗଣ୍ଡାକ ବ୍ୟତୀତ କୌଣସି ସମ୍ମାନ ମିଳିବାର ଆଶା ରହିବ ନାହିଁ।

ଦାଲ୍‌ଗେଟିଙ୍କୁ ଆଣ୍ଡରସନ୍‌ଙ୍କ କଥା ଯୁକ୍ତିଯୁକ୍ତ ମନେହେଲା। ତଥାପି ସେ ଆଉ କିଛି ସମୟ ଚିନ୍ତା କରିବା ପାଇଁ ଚାହିଁଲେ। ମେଣ୍ଟିଥ୍ ତାଙ୍କୁ ଗୋଟିଏ ରାତ୍ରି ଭାବିବାପାଇଁ ସମୟ ଦେଲେ। ସେମାନେ ମେଣ୍ଟିଥ୍‌ଙ୍କ ବନ୍ଧୁ ଆଗସ୍ ଆଲେଙ୍କ ରାଜଧାନୀ ଅଭିମୁଖରେ ଯାଉଥିଲେ। ଦାଲ୍‌ଗେଟି ସେଠାରେ ଉପଯୁକ୍ତ ଅତିଥିସତ୍କାର ପାଇବେ ଶୁଣି ଆନନ୍ଦିତ ହେଲେ।

## ଉଚ୍ଚଭୂମି ଅଞ୍ଚଳର ଆଲୋକ-ବର୍ତ୍ତିକା

ପଥିକମାନେ ଏକ ପୁରାତନ ବନ ମଧ୍ୟରେ ପ୍ରବେଶ କଲେ। ତାହାର କେନ୍ଦ୍ରସ୍ଥଳରେ ଆଗସ୍ ଆଲେ ପ୍ରାସାଦର ଚୂଡ଼ା ଦେଖାଯାଉଥିଲା। ପ୍ରାସାଦ ନିକଟବର୍ତ୍ତୀ ହୋଇ ସେମାନେ ଦେଖିଲେ– ପ୍ରାସାଦଟି ସତର୍କ

ପ୍ରହରୀମାନଙ୍କ ଦ୍ୱାରା ସୁରକ୍ଷିତ। ପ୍ରାସାଦର ବିଭିନ୍ନ ସ୍ଥାନ ଓ ଦୁର୍ଗର ପ୍ରାଚୀର ବନ୍ଧୁକ ପରିଚାଳନା ନିମିତ୍ତ ଛିଦ୍ରଯୁକ୍ତ। ସମସ୍ତ ଝରକା ଶକ୍ତ ଲୌହ ଜାଲିଦ୍ୱାରା ଆବଦ୍ଧ। ଦୁର୍ଗଦ୍ୱାର ମଧ୍ୟ ଅବରୁଦ୍ଧ। ମେଣ୍ଟିଥ୍‌ଙ୍କ ନାମ ଶୁଣି ଦୁର୍ଗଦ୍ୱାର ଖୋଲିଲା। ସେମାନେ ଭିତରେ ପ୍ରବେଶ କଲେ। ସେଠାରେ ମଧ୍ୟ ପ୍ରତିରକ୍ଷା ନିମିତ୍ତ ବିଶେଷ ବ୍ୟବସ୍ଥା ଦେଖିବାକୁ ମିଳିଲା। ଦୁର୍ଗର ପ୍ରାଚୀରକୁ ଲାଗି ବନ୍ଧୁକ ଚାଳନା ନିମିତ୍ତ ଉଚ୍ଚ ମଞ୍ଚ ତିଆରି ହୋଇଥିଲା। କେତେଗୁଡ଼ିଏ ତୋପ ମଧ୍ୟ ହଠାତ୍ ବ୍ୟବହାର ନିମିତ୍ତ ସେଠାରେ ଖଞ୍ଜାଯାଇଥିଲା।

ଆଗନ୍ତୁକମାନଙ୍କ ସେବା ନିମିତ୍ତ ଭୃତ୍ୟମାନେ ଆସି ପହଞ୍ଚିଲେ। କେତେକ ସେମାନଙ୍କ ଅଶ୍ୱଗୁଡ଼ିକ ନେଲେ ଓ କେତେକ ତାଙ୍କୁ ପ୍ରାସାଦ ମଧ୍ୟକୁ ପଥ ଦେଖାଇଲେ। କାପ୍ଟେନ୍ ଡାଲ୍‌ଗେଟି ତାଙ୍କ ଅଶ୍ୱ ଗୁସ୍ତାଭ୍‌କୁ କାହାକୁ ନଦେଇ ନିଜେ ତାହାର ଯତ୍ନ ନେବାପାଇଁ ଅଶ୍ୱଶାଳା ନିକଟକୁ ଗଲେ। ମେଣ୍ଟିଥ୍ ଓ ତାଙ୍କ ସହଯାତ୍ରୀମାନେ ଭୃତ୍ୟଙ୍କ ତତ୍ତ୍ୱାବଧାନରେ ଅଶ୍ୱ ଗୁଡ଼ିକ ଛାଡ଼ି ଏକ ପ୍ରସ୍ତର ଗୃହରେ ପ୍ରବେଶ କଲେ। ଗୃହର ଏକ କୋଣରେ ଅଗ୍ନିକୁଣ୍ଡଟିଏ ଥିଲା। ଗୃହର କାନ୍ଥଗୁଡ଼ିକରେ ଢାଲ, ଛୁରା, ଖଡ୍ଗ, ଧନୁ, ବନ୍ଧୁକ ଓ କୁଠାର ଝୁଲୁଥିଲା।

ଗୃହର ମଧ୍ୟସ୍ଥଳରେ ଖାଦ୍ୟ ପରିପୂର୍ଣ୍ଣ ଏକ ବିରାଟ ଟେବୁଲ୍ ରହିଥିଲା। ସେକାଳର ପ୍ରଥାନୁଯାୟୀ ସମ୍ଭ୍ରାନ୍ତବଂଶୀୟ ଲୋକେ ଟେବୁଲ୍‌ର ପୁରୋଭାଗରେ ଓ ଭୃତ୍ୟମାନେ ଟେବୁଲର ଅଧୋଭାଗରେ ବସୁଥିଲେ। ପୁରୋଭାଗରେ ଲର୍ଡ୍ ମେଣ୍ଟିଥ୍‌ଙ୍କ ପାଇଁ ଦୁଧ, ଲହୁଣୀ, ଛେନା ଓ ମଦ୍ୟ ସଜ୍ଜିତ ହୋଇ ରହିଥିଲା ଏବଂ ଅଧୋଭାଗରେ ଅନ୍ୟ ଏକ ଭୃତ୍ୟ ସେହିପରି ବ୍ୟବସ୍ଥା କରିବାରେ ବ୍ୟସ୍ତ ଥିଲା। ମେଣ୍ଟିଥ୍ ଅଗ୍ନିକୁଣ୍ଡ ନିକଟରେ ଠିଆହୋଇ ନିଜର ଅଙ୍ଗ ପ୍ରତ୍ୟଙ୍ଗକୁ ସତେଜ କରୁଥିଲେ।

ଡାଲ୍‌ଗେଟିଙ୍କ ବିଷୟରେ ମେଣ୍ଟିଥ୍ ଆଣ୍ଡରସନ୍‌ଙ୍କ ମତାମତ ଚାହିଁଲେ। ଆଣ୍ଡରସନ୍‌ଙ୍କ ମତରେ ଡାଲ୍‌ଗେଟି ଜଣେ ସାହସୀ ସୈନିକ ଏବଂ ସେ ସେନାବାହିନୀକୁ ଶିକ୍ଷିତ ଓ ଶୃଙ୍ଖଳିତ କରିପାରିବାରେ ବିଶ୍ୱାସଯୋଗ୍ୟ

ବ୍ୟକ୍ତି। ମେଣ୍ଟିଥ୍ କହିଲେ– ସେ ଏକ ସ୍ୱାର୍ଥପର ଓ ଲୋଭୀ ଲୋକ। ଜୀବନରେ କୌଣସି ଲକ୍ଷ୍ୟ ତାଙ୍କର ନାହିଁ। ଟଙ୍କାପାଇଁ କେବଳ ଯେ ଯୁଦ୍ଧ କରେ ସେ ଦେଶର ଦୁର୍ନାମ କରେ। ଆଣ୍ଡରସନ୍ ନମ୍ରଭାବରେ କହିଲେ– "ଇଚ୍ଛା ବିରୁଦ୍ଧରେ ମଧ୍ୟ ସେପରି ଲୋକଙ୍କୁ ଗ୍ରହଣ କରିବା ଉଚିତ। ସେ ଲୋଭୀ ଓ ସ୍ୱାର୍ଥପର ହେଲେ ମଧ୍ୟ ଅଭିଜ୍ଞ କର୍ମଚାରୀ ହେତୁ ସେନାବାହିନୀର ଶିକ୍ଷାନିମିତ୍ତ ସେହିଭଳି କେତେକ ଲୋକ ଆବଶ୍ୟକ।"

ଏହି ସମୟରେ ଆଙ୍ଗସ୍ ଆଲେଙ୍କ ଭାଇ ଆଲାନ୍ ଆଲେ ସେଠାରେ ପ୍ରବେଶ କଲେ। ସେ ଦୀର୍ଘକାୟ, ବଳଶାଳୀ। ସେ ଧୀରଗତିରେ ଟେବୁଲ ନିକଟରେ ପହଞ୍ଚିଲେ। ମେଣ୍ଟିଥ୍ ତାଙ୍କୁ କୁଶଳ ପ୍ରଶ୍ନ କଲେ। କିନ୍ତୁ ସେ ନୀରବରେ ଅଗ୍ନିକୁଣ୍ଡ ନିକଟରେ ଥିବା ଏକ ବେଞ୍ଚ ଉପରେ ବସିଲେ ଏବଂ ଜ୍ୱଳନ୍ତ ଅଗ୍ନିକୁଣ୍ଡକୁ ଚାହିଁ ରହି ଚିନ୍ତାରେ ମଗ୍ନ ହେଲେ। ତାଙ୍କର ଚକ୍ଷୁ ଦୁଇଟି କୃଷ୍ଣବର୍ଣ୍ଣ ଓ ହିଂସ୍ର ଏବଂ ମୁଖ ଗମ୍ଭୀର ଦିଶୁଥିଲା। ସେ ମେଣ୍ଟିଥ୍ ଏବଂ ତାଙ୍କ ଭୃତ୍ୟ ପ୍ରତି ଦୃଷ୍ଟିନଦେଇ ନିଶ୍ଚଳ ଭାବରେ ସେଠାରେ ବସି ରହିଲେ। ତାଙ୍କର ଏପରି ଅବସ୍ଥାରେ ତାଙ୍କୁ କିଛି ନକହିବା ପାଇଁ ଜଣେ ପୁରୋହିତ ଭୃତ୍ୟ ମେଣ୍ଟିଥ୍‌ଙ୍କୁ କହିଲା। ହଠାତ୍ ଆଲାନ୍ ପୁରାତନ ଭୃତ୍ୟକୁ ପଚାରିଲେ– ଚାରିଜଣ ଅତିଥି ଆସିବାର ଥିଲା। କେବଳ ତିନିଜଣ ସେଠାରେ ବସିଛନ୍ତି। ଚତୁର୍ଥ ଜଣକ କାହାନ୍ତି? ସେହି ସମୟରେ କାପ୍‌ଟେନ୍ ଦାଲ୍‌ଗେତି ସେଠାରେ ପ୍ରବେଶ କଲେ। ସେ ମେଣ୍ଟିଥ୍‌ଙ୍କ ନିକଟରେ ବସିବେ କି ନାହିଁ ଭୃତ୍ୟଟି ପଚାରିଲା। ମେଣ୍ଟିଥ୍ ତାଙ୍କ ନିକଟରେ ସ୍ଥାନ ଦେବାକୁ ନିର୍ଦ୍ଦେଶ ଦେଲେ। ଗୃହର ମାଲିକ ଶିକାର ଉଦ୍ଦେଶ୍ୟରେ ଯାଇଥିବା ଭୃତ୍ୟଟି ଜଣାଇଲା। ସେ ଆସିବାରେ ବିଳମ୍ବର ସମ୍ଭାବନା ଥିବାରୁ ଆଗନ୍ତୁକମାନଙ୍କର କ୍ଷୁଧା ଦୂରକରିବାପାଇଁ କିଛି ରୁଟି ଓ ଛେନାର ବ୍ୟବସ୍ଥା ହୋଇଥିଲା। ଅତିଥିମାନେ ଏ ବ୍ୟବସ୍ଥାରେ ସନ୍ତୁଷ୍ଟ ହୋଇ ନିଜ ନିଜ ଆସନ ନିକଟକୁ ଗଲେ। ଦାଲ୍‌ଗେତି ଓ ମେଣ୍ଟିଥ୍ ଟେବୁଲର ପୁରୋଭାଗରେ ପଡ଼ିଥିବା ଚୌକିରେ

ବସିଲେ। ଆଲାନ୍ ହଠାତ୍ ଏକ ଦୀପନେଇ କିଛି ସମୟ ଦାଲ୍‌ଗେଟିଙ୍କ ମୁହଁକୁ ଚାହିଁଲେ ଏବଂ ପୁନରାୟ ଭୃତ୍ୟଙ୍କ ଟେବୁଲ ନିକଟକୁ ଯାଇ ଆଣ୍ଡରସନ୍‌ଙ୍କ ମୁଖକୁ ନିରୀକ୍ଷଣ କଲେ। ସେ ଆଣ୍ଡରସନ୍‌କୁ ଟାଣି ଆଣି ପୁରୋଭାଗର ଏକ ଚୌକିରେ ବସାଇ ଦାଲ୍‌ଗେଟିଙ୍କୁ ଅପରପାର୍ଶ୍ୱକୁ ଠେଲିଦେଲେ। ଏଥିରେ କାପ୍‌ଟେନ ଦାଲ୍‌ଗେଟି ଭୀଷଣ ରାଗିଗଲେ ଏବଂ ଆଲାନ୍‌ଙ୍କୁ ଠେଲିଦେବାପାଇଁ ଚେଷ୍ଟା କଲେ। ଦାଲ୍‌ଗେଟି ବଳବାନ୍ ଥିଲେ ସତ; କିନ୍ତୁ ଆଲାନ୍ ତାଙ୍କଠାରୁ ଅଧିକ ବଳବାନ୍ ଥିଲେ। ତେଣୁ ଆଲାନ୍ ଏକ ଧକ୍‌କାରେ କାପ୍‌ଟେନ୍‌ଙ୍କୁ ତଳେ ପକାଇଦେଲେ। କାପ୍‌ଟେନ୍‌ଙ୍କ ପକ୍ଷରେ ଏହା ଅତି ଅସହ୍ୟ ଥିଲା। ସେ ଠିଆହୋଇ ଯାଇ ତରବାରି ବାହାରକରି ଆଲାନ୍‌ଙ୍କ ନିକଟକୁ ଧାଇଁଗଲେ। ଆଲାନ୍ ଧୀରସ୍ଥିର ଭାବରେ ଛାତି ଉପରେ ହାତ ଛନ୍ଦି ଠିଆହୋଇ ଥିଲେ। କିନ୍ତୁ ଭୃତ୍ୟମାନେ ନିଜନିଜର ଅସ୍ତ୍ରଶସ୍ତ୍ର ଧରି କାପ୍‌ଟେନ୍‌ଙ୍କୁ ପ୍ରତିଆକ୍ରମଣ କରିବାକୁ ପ୍ରସ୍ତୁତ ହେବାରୁ ମେଣ୍ଟିଥ୍ ଓ ଆଣ୍ଡରସନ୍ ତାଙ୍କ ମଝିରେ ଠିଆହୋଇଗଲେ।

ମେଣ୍ଟିଥ୍ ଦାଲ୍‌ଗେଟିଙ୍କୁ କହିଲେ– ଆଲାନ୍ ଏକ ବଦ୍ଧ ପାଗଳ। ତେଣୁ ତାଙ୍କ ସହିତ କଳହ ଅନୁଚିତ। ଦାଲ୍‌ଗେଟି କହିଲେ– ଯଦି ପ୍ରକୃତରେ ସେ ପାଗଳ ତେବେ ମୁଁ ଏହି ଅପମାନ ଭୁଲିଯିବି। ସେ ଏକ ବଳବାନ୍ ଯୁବକ। ଏପରି ଏକ ଯୁବକ ପାଗଳ ହେବା ଦୁର୍ଭାଗ୍ୟ।

ଏହାପରେ ସବୁ ଶାନ୍ତ ହୋଇଗଲା। ସମସ୍ତେ ଭୋଜନରେ ମନ ଦେଲେ। ଆଲାନ୍ ଅଗ୍ନିକୁଣ୍ଡ ନିକଟରେ ନୀରବରେ ବସି ରହିଲେ। ଆଲେଙ୍କ ପୁରାତନ ଭୃତ୍ୟଠାରୁ ମେଣ୍ଟିଥ୍ ଆଙ୍ଗସ୍ ଆଲେଙ୍କ ସହ କିଏ କିଏ ଶିକାରକୁ ଯାଇଛନ୍ତି ଜାଣିବାକୁ ଚାହିଁଲେ। ଦୁଇଜଣ ଇଂରେଜ ଲୋକ ସାର୍ ମାଇଲ୍‌ସ ମସ୍‌ଗ୍ରେଭ୍ ଓ ସାର୍ କ୍ରିଷ୍ଟଫର୍ ହଲ୍ ତାଙ୍କ ସଙ୍ଗେ ଯାଇଥିବା ଭୃତ୍ୟ ଜଣାଇଲା। ଇଂରେଜ ଲୋକ ଦୁଇଜଣଙ୍କ ନାମ ଶୁଣି ମେଣ୍ଟିଥ୍ ଖୁସିହେଲେ। କିନ୍ତୁ ଭୃତ୍ୟ ଡୋନାଲଡ୍ ଦୁଃଖର

ସହ କହିଲା – "ସେମାନଙ୍କର ଉପସ୍ଥିତି ସେ ଗୃହର ପତନର କାରଣ ହେବ।" ମେଣ୍ଟିଥ୍ ଆଶ୍ଚର୍ଯ୍ୟରେ ତାହାକୁ ଚାହିଁ ରହିଲେ। ଡୋନାଲଡ୍ କହିଲା – "ମୋର ପ୍ରଭୁ ଇଂଲଣ୍ଡରେ ଥିଲାବେଳେ ସାର୍ ମାଇଲ୍ସ ମସ୍‌ଗ୍ରେଭ୍‌ଙ୍କ ଘରେ ରହୁଥିଲେ। ତାଙ୍କର ଖାଇବା ଟେବୁଲ ଉପରେ ରୂପାର ଛଅଟି ପିଲିସଜ ଥିଲା। ମାଇଲ୍ସ ମୋର ପ୍ରଭୁଙ୍କୁ ହସି ହସି ପଚାରିଲେ ଯେ ସେ ସ୍କଟଲାଣ୍ଡରେ ସେପରି ପିଲିସଜ ନିଶ୍ଚୟ କେଉଁଠାରେ ଦେଖି ନାହାନ୍ତି। ଦେଶର ସମ୍ମାନରକ୍ଷା ନିମନ୍ତେ ମୋର ପ୍ରଭୁ ଆମ ପ୍ରାସାଦରେ ତା'ଠାରୁ ଅଧିକ ସୁନ୍ଦର ପିଲିସଜ ଅଛି ବୋଲି କହିଲେ। ସାର୍ ମାଇଲ୍ସ ଦୁଇଶହ ରୌପ୍ୟମୁଦ୍ରା ଏଥିପାଇଁ ବାଜି ରଖିଥିଲେ। ସେହି ପିଲିସଜ ଦେଖାଇବାପାଇଁ ସେମାନଙ୍କୁ ନେଇ ମୋର ପ୍ରଭୁ ଆଜି ରାତ୍ରରେ ଏଠାରେ ପହଞ୍ଚିବେ। ମୋର ପ୍ରଭୁଙ୍କର ସେପରି ପିଲିସଜ ନଥିବାରୁ ସେ ନିଶ୍ଚୟ ହାରିବେ। କେଉଁଠାରୁ ବା ଏତେଟଙ୍କା ଆସିବ? ଇଂରେଜମାନେ ତାଙ୍କ ବାଜି ଉଠାଇ ନେବା ପର୍ଯ୍ୟନ୍ତ ତାଙ୍କୁ ବନ୍ଦୀ କରିବାକୁ ମୁଁ ମଧ୍ୟ ପ୍ରସ୍ତାବ ଦେଇଥିଲି।"

ଆଲାନ୍ ହଠାତ୍ ଉଠିପଡ଼ି ଏଭଳି ନିର୍ଲଜ ପ୍ରସ୍ତାବ ତା' ଭାଇଙ୍କୁ ଦେଇଥିବାରୁ ଡୋନାଲଡକୁ ଭର୍ତ୍ସନା କଲେ ଏବଂ ସମସ୍ତଙ୍କୁ ସେ ଗୃହ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଲେ। ଡୋନାଲଡ ମେଣ୍ଟିଥ୍ ଓ କାପ୍‌ଟେନଙ୍କୁ ଅନ୍ୟ ଏକ କୋଠରିକୁ ନେଇଗଲା।

କିଛି ସମୟ ପରେ ଗୃହର କର୍ତ୍ତା ଆଙ୍ଗସ୍ ଓ ଇଂରେଜ ଅତିଥିଦ୍ୱୟ ସେଠାରେ ପହଞ୍ଚିଲେ। ମେଣ୍ଟିଥ୍ ଆନନ୍ଦରେ ତାଙ୍କ ସହ କରମର୍ଦ୍ଦନ କଲେ ଏବଂ କାପ୍‌ଟେନ ଦାଲ୍‌ଗେଟିଙ୍କ ପରିଚୟ ପ୍ରଦାନ କଲେ। ରୌପ୍ୟ ପିଲିସଜ ଚିନ୍ତାରେ ଆଙ୍ଗସ୍ ବିବ୍ରତ ଥିବା ମେଣ୍ଟିଥ୍ ତାଙ୍କ ମୁହଁରୁ ଲକ୍ଷ୍ୟ କଲେ।

କିଛି ସମୟ ଧରି ଯୁଦ୍ଧ ଓ ତାର ଫଳାଫଳ ବିଷୟରେ କଥାବାର୍ତ୍ତା ଚାଲିଲା। ରାତ୍ରିଭୋଜନର ବ୍ୟବସ୍ଥା ହୋଇଥିବା ଡୋନାଲଡ ଜଣାଇଲା ଏବଂ ଅତିଥିଙ୍କ ପାଇଁ ପିଲିଜସ ମଧ୍ୟ ଜଳୁଥିବା କଥା କହିଲା।

ମେଣ୍ଟିଥ୍ ଓ ଆଙ୍ଗସ୍ ଏହାଶୁଣି ବିଚଳିତ ହେଲେ ଏବଂ ଅତିଥିଦ୍ୱୟ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ଡୋନାଲ୍ଡ କେଉଁ ପିଲିସଜ ଜଳିବାର ଖବର ଦେଲା ବୁଝିପାରିଲେନାହିଁ। ତେଣୁ ସମସ୍ତେ ଶୀଘ୍ର ଖାଇବା ଘର ଆଡ଼େ ଚାଲିଲେ।

ସେଠାରେ ସେମାନେ ଯାହା ଦେଖିଲେ ସେଥିରେ ସ୍ତମ୍ଭୀଭୂତ ହୋଇଗଲେ। ଟେବୁଲ ଖାଦ୍ୟପଦାର୍ଥରେ ଭରପୂର ଥିଲା। ପ୍ରତ୍ୟେକ ଆସନର ପଛରେ ଜଣେ ଜଣେ ଦୀର୍ଘକାୟ ଉଚ୍ଚଭୂମି ଅଞ୍ଚଳର ସୈନିକ ଏକ ହସ୍ତରେ ପ୍ରଜ୍ୱଳିତ ମଶାଲ ଓ ଅନ୍ୟ ହସ୍ତରେ ଉନ୍ମୁକ୍ତ ତରବାରି ଧରି ଠିଆହୋଇଥିଲେ। ସେମାନେ ମଶାଲର ଆଲୋକରେ ଭୟଙ୍କର ଦିଶୁଥିଲେ। ଆଲାନ୍ ସମ୍ମୁଖକୁ ଆସି ଏବଂ ସେମାନଙ୍କୁ ନିର୍ଦ୍ଦେଶ କରି ଇଂରେଜମାନଙ୍କୁ କହିଲେ – "ହେ ଭଦ୍ର ମହୋଦୟଗଣ ! ମୋର ଭାଇଙ୍କ ଗୃହର ଏଇମାନେ ହିଁ ଆଲୋକବର୍ତ୍ତିକା। ଏଇମାନେ ହିଁ ସୁନ୍ଦର ପିଲିସଜ। ଏମାନେ ସାହସୀ ଓ ବଳବାନ୍। ପ୍ରଭୁଙ୍କ ପାଇଁ ଜୀବନ ଦେବାକୁ ଏମାନେ ସର୍ବଦା ପ୍ରସ୍ତୁତ। ତେଣୁ ଏମାନେ କ'ଣ ଆପଣଙ୍କ ପିଲିସଜ ଠାରୁ ସୁନ୍ଦର ଓ ଉତ୍କୃଷ୍ଟ ନୁହନ୍ତି ? ଏଥିରେ ମୋ ଭାଇ ବାଜି ହାରିବାର ବୋଧେ ସମ୍ଭାବନା ନାହିଁ ?"

ମସ୍‌ଗ୍ରେଭ୍ କହିଲେ – "ଠିକ୍ କଥା। ତୁମ ଭାଇହିଁ ବାଜି ଜିଣିଛନ୍ତି।" ସେ ଦୁଇଶହ ରୌପ୍ୟମୁଦ୍ରା ବାହାର କରି ଥୋଇଲେ। ଆଲାନ୍ କହିଲେ – "ମୋ ଭାଇ ସେ ଟଙ୍କା ନେବେ ନାହିଁ। କେବଳ ଭାଇ ଯେ ବାଜି ଜିଣିଛନ୍ତି ଏ କଥା ଶୁଣିଲେ ସମସ୍ତେ ଖୁସି ହେବେ।" ହଲ୍ ଓ ମସ୍‌ଗ୍ରେଭ୍ ଆନନ୍ଦରେ ହଁ ଭରିଲେ। ଆଙ୍ଗସ୍ ହସି ହସି କହିଲେ – ଏହା କେବଳ ଏକ ପ୍ରକାର କୌତୁକ। ତାଙ୍କ ମୁଖରୁ ଦୁଃଖର ଛାୟା ଅପସରିଗଲା ଓ ସେ ଖୁସି ହେଲେ। ସେମାନେ ଟେବୁଲ ଚାରିପାଖେ ବସି ରାତ୍ରିଭୋଜନର ସଦ୍‌ବ୍ୟବହାର କଲେ।

ରାତ୍ରି ଭୋଜନ ପରେ ଦେଶର ଅବସ୍ଥା ବିଷୟରେ ଆଲୋଚନା ଆରମ୍ଭ ହେଲା। ଆଙ୍ଗସ୍ କହିଲେ – "ସେନାପତିଙ୍କ ଉପରେହିଁ ତାଙ୍କର

ବିଜୟ ନିର୍ଭର କରେ। କେବଳ ମଣ୍ଡରୋଜଙ୍କୁ ହିଁ ସମସ୍ତେ ମାନିବେ। ସେଠାରେ ତାଙ୍କର ଉପସ୍ଥିତ ନାହାତି ବାଞ୍ଛନୀୟ।'' ସାର୍ କ୍ରିଷ୍ଟଫର୍ ମଣ୍ଡରୋଜଙ୍କ ପତ୍ତା ନଥିବା କଥା କହିଲେ। ଆଲାନ୍ କହିଲେ— ''ମଣ୍ଡରୋଜ କେଉଁଠାରେ ଅଛନ୍ତି ମୁଁ ଜାଣେ। ତାହା ମଧ୍ୟ ଆପଣମାନେ ଶୀଘ୍ର ଜାଣିପାରିବେ।'' ତା'ପରେ ସେ ମେଣ୍ଟିଥ୍‌ଙ୍କ ଆଡ଼କୁ ବୁଲିପଡ଼ି କହିଲେ— ''ତୁମେ ଆନଟ୍‌ଲାଇଲ୍‌ଠାରୁ ଦୂରରେ ରହିବାକୁ ପଡ଼ିବ।'' ଏ ପ୍ରକାର ଆକ୍ଷେପରେ ମେଣ୍ଟିଥ୍ ଆଶ୍ଚର୍ଯ୍ୟ ହୋଇଗଲେ। ଆନଟ୍‌ଲାଇଲ୍ ଆଙ୍ଗସ୍‌ଙ୍କର ଏକ ଦାସୀ। କିନ୍ତୁ ସେ ସୁନ୍ଦରୀ ଓ ବୀଣା ବାଦନରେ ଅଦ୍ୱିତୀୟା। ମେଣ୍ଟିଥ୍ ତାଙ୍କୁ ସୁଖପାଆନ୍ତି। କିନ୍ତୁ ଆଲାନ୍ ଏପରି କାହିଁକି କହିଲେ ସେ ବୁଝିପାରିଲେନାହିଁ। ଆଲାନ୍ କହିଲେ— ସେ ଏବଂ ଆନଟ୍ ପରସ୍ପରକୁ ହିଁ ଧ୍ୱଂସ କରିବେ। ଏହାପରେ ସେ ଉଠି ଚାଲିଗଲେ ଏବଂ ସମସ୍ତେ ପରସ୍ପରକୁ ଶୁଭରାତ୍ରି ଜଣାଇ ଶଯ୍ୟା ଗ୍ରହଣ କରିବା ପାଇଁ ନିଜ ନିଜର ଶୟନ କକ୍ଷରେ ପ୍ରବେଶକଲେ।

## ଆଲାନ୍‌ଙ୍କ କାହାଣୀ

ମେଣ୍ଟିଥ୍ ଓ ଦାଲ୍‌ଗେଟି ତାଙ୍କ ପାଇଁ ଉଦ୍ଦିଷ୍ଟ ଶୟନ କକ୍ଷରେ ପ୍ରବେଶ କଲେ। ସେଠାରେ ଚାରୋଟି ଶଯ୍ୟା ପ୍ରସ୍ତୁତ ହୋଇଥିଲା। ସେ ସମୟରେ ଭୃତ୍ୟମାନେ ଅଲଗା ଗୃହରେ ଶୟନ କରୁଥିଲେ। କିନ୍ତୁ ଦାଲ୍‌ଗେଟିଙ୍କୁ ସନ୍ଦେହ କରି ଆଙ୍ଗସ୍ ମେଣ୍ଟିଥ୍‌ଙ୍କ ସହ ତାଙ୍କ ଭୃତ୍ୟମାନେ ଏକ କୋଠରିରେ ଶୋଇବା ପାଇଁ ବ୍ୟବସ୍ଥା କରିଥିଲେ।

ଦାଲ୍‌ଗେଟି ନିଜର ପୋଷାକ ବଦଳାଇଲେ। କିନ୍ତୁ ଭୂରି-ଭୋଜନ ହେତୁ ତାଙ୍କ ଧାଞ୍ଜୁ ଖୋଲି ନପାରି ତାଙ୍କୁ ସାହାଯ୍ୟ କରିବାକୁ ଆଣ୍ଡରସନ୍‌ଙ୍କୁ ଅନୁରୋଧ କଲେ। ଆଣ୍ଡରସନ୍ ସିବାଲ୍‌ଡଙ୍କୁ ତାହା ଖୋଲିବାକୁ ନିର୍ଦ୍ଦେଶ ଦେଲେ। ଏଥିରେ ଦାଲ୍‌ଗେଟି ବିସ୍ମୟ ଓ କ୍ରୋଧ ପ୍ରକାଶ କଲେ। ମେଣ୍ଟିଥ୍ ତାଙ୍କୁ ଶାନ୍ତ କରିବାକୁ କହିଲେ ଯେ ଆଣ୍ଡରସନ୍ ତାଙ୍କ ବ୍ୟତୀତ ଅନ୍ୟ କାହାର ସେବା କରନ୍ତି ନାହିଁ। ସିବାଲ୍‌ଡ ଓ ସେ

ନିଜେ ତାଙ୍କୁ ସାଞ୍ଜୁ ବାହାର କରିବାରେ ସାହାଯ୍ୟ କଲେ। ଦାଲ୍‌ଗେଟି ଏଥିରେ ଏକ ପ୍ରକାର ସନ୍ତୁଷ୍ଟ ହେଲେ ଏବଂ ସାଞ୍ଜୁ ବାହାର କରି ସାରିବା ପରେ ନିଆଁ ପାଖରେ ବସି ଦିନଯାକର ଘଟଣା ସବୁ ମନେ ପକାଇଲେ।

ଦାଲ୍‌ଗେଟି ମେଣ୍ଟିଥ୍‌ଙ୍କୁ କହିଲେ– "ଆଲାନ୍ ପ୍ରକୃତରେ ବୋକା ବା ପାଗଳ ନୁହନ୍ତି। ସେ ଯେପରି କୌଶଳରେ ତାଙ୍କ ଭାଇଙ୍କୁ ବାଜି ଜିଣିବାରେ ସାହାଯ୍ୟ କଲେ କୌଣସି ବୋକା ଲୋକ ଏପରି କରି ପାରିବ ନାହିଁ। ତେଣୁ ସେଦିନ ସଂଧ୍ୟାର ଅଭଦ୍ର ବ୍ୟବହାର ପାଇଁ ସେ ତାଙ୍କୁ ନିଶ୍ଚୟ ଏକ ଶିକ୍ଷା ଦେବେ। ଆଲାନ୍‌ର ଏ ପ୍ରକାର ଅଦ୍ଭୁତ ବ୍ୟବହାରର କାରଣ କହିବାକୁ ଯାଇ ମେଣ୍ଟିଥ୍ ଆଲାନ୍‌ଙ୍କ ଜନ୍ମ ବୃତ୍ତାନ୍ତ ଆରମ୍ଭ କଲେ। ଦାଲ୍‌ଗେଟି, ସିବାଲ୍‌ଡ ଓ ଆଣ୍ଡରସନ୍ ତାହା ଆଗ୍ରହରେ ଶୁଣିଲେ।

ଆଙ୍ଗସ୍ ଓ ଆଲାନ୍‌ଙ୍କ ପିତା ଏକ ସମ୍ଭ୍ରାନ୍ତ ବଂଶଜ, ଉଚ୍ଚଭୂମି ଅଞ୍ଚଳର ଦଳପତି ଥିଲେ। ତାଙ୍କର ସହଧର୍ମିଣୀ ମଧ୍ୟ ସଦ୍‌ବଂଶଜା ଏବଂ ତାଙ୍କର (ମେଣ୍ଟିଥ୍‌ଙ୍କର) ସଂପର୍କୀୟା ଥିଲେ। ତାଙ୍କ ଭାଇ ଏକ ସମ୍ମାନାସ୍ପଦ ବ୍ୟକ୍ତି ଥିଲେ। ସେ ଦୁର୍ଗ ନିକଟରେ ଥିବା ଅରଣ୍ୟର ରକ୍ଷକ ଥିଲେ ଏବଂ ସେଠାରେ ଶିକାର କରିବା ଅଧିକାର କେବଳ ତାଙ୍କର ଥିଲା। ଦିନେ ଦଳେ ପାର୍ବତ୍ୟ ଦସ୍ୟୁଙ୍କ ସହ ତାଙ୍କର କଳହ ହେଲା। ଏହି ଦସ୍ୟୁମାନେ ଯେପରି ବଳବାନ୍ ସେହିପରି ନିଷ୍ଠୁର ପ୍ରକୃତିର ଥିଲେ। ସେମାନେ ଆଲାନ୍‌ଙ୍କ ମାମୁଁଙ୍କୁ ହତ୍ୟାକଲେ ଓ ତାଙ୍କର କଟା ମୁଣ୍ଡଟି ଧରି ଦୁର୍ଗ ମଧ୍ୟରେ ପ୍ରବେଶକଲେ। ସେତେବେଳେ ଆଲାନ୍‌ଙ୍କ ପିତା ଉପସ୍ଥିତ ନଥିଲେ। ତେଣୁ ତାଙ୍କ ସ୍ତ୍ରୀ ଭୀତ ଶଙ୍କିତ ହୃଦୟରେ ଦସ୍ୟୁମାନଙ୍କର ଅଭ୍ୟର୍ଥନା କଲେ। ସେମାନଙ୍କୁ କିଛି ଖାଇବାକୁ ଅନୁରୋଧ କରିବାରୁ ସେମାନେ ଖାଇବାକୁ ରାଜିହୋଇଥିଲେ। ଖାଦ୍ୟ-ସାମଗ୍ରୀ ଟେବୁଲରେ ଥୁଆ ହୋଇଥିଲା। ଗୃହକର୍ତ୍ତ୍ରୀ ବାହାରକୁ ଯିବାରୁ ଦସ୍ୟୁମାନେ କଟାମୁଣ୍ଡଟି ଟେବୁଲ ଉପରେ ରଖି ତା' ପାଟିରେ ଖଣ୍ଡିଏ

ରୁଟି ଗେଞ୍ଜିଦେଲେ। ଏହି ସମୟରେ ଗୃହକର୍ତ୍ତ୍ରୀ ସେଠାକୁ ଫେରିଆସି ମେ ଭୀଷଣ ଦୃଶ୍ୟ ଦେଖିଲେ। ନିଜ ଭାଇଙ୍କ ଛିନ୍ନମସ୍ତକ ସେଠାରେ ଦେଖି ସେ ଏକ ବିକଟ ଚିତ୍କାର କରି ଅରଣ୍ୟ ମଧ୍ୟକୁ ଧାଇଁ ଚାଲିଗଲେ। ଦସ୍ୟୁମାନେ ଚାଲିଯିବାପରେ ଭୀତତ୍ରସ୍ତ ଭୃତ୍ୟଗଣ ଚାରି-ଆଡ଼େ ଗୃହକର୍ତ୍ତ୍ରୀଙ୍କୁ ଖୋଜିଲେ। ତାଙ୍କ ସ୍ୱାମୀ ଫେରି ଆସିବାପରେ ଅଧିକ ତତ୍ପରତାର ସହିତ ବିଭିନ୍ନ ଅଞ୍ଚଳ ଖୋଜାଗଲା। କିନ୍ତୁ ସମସ୍ତ ଚେଷ୍ଟା ବିଫଳ ହେଲା। ସେ ନଦୀକୁ ଡେଇଁ ଆତ୍ମହତ୍ୟା କରିଥିବା ଆଶଙ୍କା କରି ସମସ୍ତେ ଖୋଜିବାରୁ ବିରତ ହେଲେ।

ଏ ଖବର ଚତୁର୍ଦ୍ଦିଗରେ ରାଷ୍ଟ୍ର ହୋଇଗଲା। ସ୍କଟଲାଣ୍ଡର ପ୍ରତ୍ୟେକ ଦଳପତି ଏ ହତ୍ୟାର ପ୍ରତିଶୋଧ ନେବା ପାଇଁ ପ୍ରତିଜ୍ଞା କଲେ। ସେମାନେ ଆଲାନ୍‌ଙ୍କ ପିତାଙ୍କ ସହ ମିଳିତ ହୋଇ ଦସ୍ୟୁଦଳକୁ ନିର୍ମୂଳ କରିବାରେ ଲାଗିଲେ। ସତରଟି ଦସ୍ୟୁର ମସ୍ତକ ଛେଦନ କରାଯାଇଥିଲା। ଅନ୍ୟ ଯେଉଁମାନେ ଏଥିରୁ ରକ୍ଷା ପାଇଥିଲେ ସେମାନେ ଦୂରବର୍ତ୍ତୀ ଏକ ପାର୍ବତ୍ୟ ପ୍ରଦେଶକୁ ଚାଲିଗଲେ।

ଦିନେ ଆଲାନ୍‌ଙ୍କ ପରିବାରର ସ୍ତ୍ରୀମାନେ ଗୋଚର ପଡ଼ିଆରେ ଗାଈ ଦୁହିଁଲାବେଳେ ନିକଟବର୍ତ୍ତୀ ଏକ ପର୍ବତ ଶିଖରରେ ଏକ ଦୁର୍ବଳ ମନୁଷ୍ୟମୂର୍ତ୍ତି ଚଳପ୍ରଚଳ ହେବା ଦେଖିଲେ। ସେ ମୂର୍ତ୍ତିଟି ତାଙ୍କର ଗୃହକର୍ତ୍ତ୍ରୀ ପରି ଦେଖାଯିବାରୁ ତାକୁ ସେମାନେ ଗୃହକର୍ତ୍ତ୍ରୀଙ୍କର ପ୍ରେତାତ୍ମା ବୋଲି ମନେ କରିଥିଲେ। କେତେକ ସାହସର ସହିତ ତାର ନିକଟବର୍ତ୍ତୀ ହେବାରୁ ମୂର୍ତ୍ତିଟି ବିକଟ ଚିତ୍କାର କରି ବନ ମଧ୍ୟରେ ଅଦୃଶ୍ୟ ହୋଇଗଲା। ତାଙ୍କର ସ୍ୱାମୀ ଏହା ଶୁଣି ସେଠାକୁ ଆସି ତାଙ୍କୁ ଧରି ନେଇଥିଲେ। ସେ ସମ୍ପୂର୍ଣ୍ଣ ପାଗଳୀ ହୋଇଯାଇଥିଲେ। ସେ ଅରଣ୍ୟ ମଧ୍ୟରେ ଏତେ ଦିନ କିପରି ଖାଦ୍ୟ ଓ ଆଶ୍ରୟ ଅଭାବରେ କଟାଇଲେ ତାହାହିଁ ଆଶ୍ଚର୍ଯ୍ୟର ବିଷୟ ହୋଇଥିଲା। ଏହାର କିଛି ଦିନ ପରେ ଆଲାନ୍‌ଙ୍କ ଜନ୍ମ ହେଲା। ଆଙ୍ଗସ ତାହାର ଦୁଇବର୍ଷ ପୂର୍ବରୁ ଜନ୍ମ ହୋଇଥିଲେ। ଆଲାନ୍‌ଙ୍କ ଜନ୍ମ ପରେ ତାଙ୍କର ପାଗଳାମି ଅବଶ୍ୟ

ଜମିଗଲା । କିନ୍ତୁ ତାଙ୍କର ହୃତସ୍ୱାସ୍ଥ୍ୟ ଆଉ ସେ ଫେରି ପାରିଲେ ନାହିଁ। ଆଲାନ୍ କେବଳ ତାଙ୍କର ଆନନ୍ଦବର୍ଦ୍ଧନ କରୁଥିଲେ ଏବଂ ତାଙ୍କର ଭୟ ଓ ଆଶଙ୍କାର କାରଣ ତାଙ୍କୁ କହୁଥିଲେ। ଆଲାନ୍‌ଙ୍କୁ ଦଶବର୍ଷବେଳେ ତାଙ୍କର ମୃତ୍ୟୁ ହେଲା । ମୃତ୍ୟୁପୂର୍ବରୁ ଆଲାନ୍‌ଙ୍କୁ ମୃତ୍ୟୁଶଯ୍ୟା ପାଖକୁ ଡାକି ବହୁତ ସମୟ ପର୍ଯ୍ୟନ୍ତ ସେ କଥାବାର୍ତ୍ତା ହୋଇଥିଲେ। ତାଙ୍କ ସହିତ କ'ଣ କଥାବାର୍ତ୍ତା କଲେ ଆଶଙ୍କା ତାହା କେହି କହିପାରିଲେ ନାହିଁ। କିନ୍ତୁ ସେହି ଦସ୍ୟୁମାନଙ୍କ ଉପରେ ପ୍ରତିଶୋଧ ନେବାକୁ ଯେ କହିଥିଲେ ତାହା ସମସ୍ତେ ଜାଣିଥିଲେ।

ସେହି ମୁହୂର୍ତ୍ତରୁ ଆଲାନ୍‌ଙ୍କ ବ୍ୟବହାର ସମ୍ପୂର୍ଣ୍ଣ ବଦଳି ଯାଇଥିଲା। ସେ ପର୍ଯ୍ୟନ୍ତ ସେ ମା'ଙ୍କ ସାଥିରେ ତାଙ୍କର ସମସ୍ତ ସମୟ କଟାଇ ବିଭୀଷିକାମୟ କାହାଣୀ ଶୁଣିଥିଲେ। ତାଙ୍କ ମୁଖରେ ଶଙ୍କାର ଚିହ୍ନ ସର୍ବଦା ଫୁଟି ଉଠୁଥିଲା। ସମବୟସ୍କ ପଲାମାନଙ୍କ ପାଖକୁ ସେ ଯାଉନଥିଲେ ଏବଂ ଜଙ୍ଗଲରେ ଏକାକୀ ବୁଲିବାରେ ଆନନ୍ଦ ପାଉଥିଲେ। ସମୟ ସମୟରେ ସେ ଚିନ୍ତିତ ଓ ଗମ୍ଭୀର ହେଉଥିଲେ। କିନ୍ତୁ ଅନ୍ୟ ସମୟରେ ଖେଳ କସରତରେ ଅନ୍ୟମାନଙ୍କ ସହ ଭାଗ ନେଉଥିଲେ। ପିଲାଦିନୁ ସେ ସୁସ୍ଥସବଳ ଥିଲେ। ଖେଳ କସରତରେ ସେ ସମସ୍ତଙ୍କଠାରୁ ଉତ୍ତମ ବିବେଚିତ ହୋଇଥିଲେ।

କାପ୍‌ଟେନ ଦାଲ୍‌ଗେତିଙ୍କ ଘୁଙ୍ଗୁଡ଼ି ମାରିବା ଶବ୍ଦ ଶୁଭୁଥିଲା। କିଛିତ୍ ହସି ମେଣ୍ଟିଥ୍ କହିବାକୁ ଲାଗିଲେ— ପନ୍ଦରବର୍ଷ ବେଳକୁ ଆଲାନ୍ ବେଶ୍ ବଳବାନ୍ ଓ ସ୍ୱାଧୀନଚେତା ହୋଇଥିଲେ। ସେ ମଧ୍ୟ ଚିନ୍ତାଶୀଳ ଥିଲେ। ତାଙ୍କର ବ୍ୟବହାର ବେଳେ ବେଳେ ଆଶାନୁରୂପ ହେଉନଥିବାରୁ ତାଙ୍କ ପିତା ବ୍ୟସ୍ତ ହୋଇପଡ଼ିଲେ। ଜଙ୍ଗଲକୁ ଏକାକୀ ଯାଇ ଦିନ ଦିନ ଓ ରାତି ରାତି ସେ ରହୁଥିଲେ। ଦସ୍ୟୁମାନେ ବହୁ ସଂଖ୍ୟାରେ ଦୁର୍ଗ ନିକଟରେ ଥିବା ଅରଣ୍ୟକୁ ଆସିଥିବାରୁ ତାଙ୍କର ଏପରି ଅନୁପସ୍ଥିତିରେ ଅମଙ୍ଗଳ ଆଶଙ୍କା କରି ତାଙ୍କ ପିତା ଚିନ୍ତିତ ହୋଇପଡୁଥିଲେ।

ମୁଁ ଦିନେ ଦୁର୍ଗରେ ଉପସ୍ଥିତ ଥିଲାବେଳେ ଏକ ଆଶ୍ଚର୍ଯ୍ୟଜନକ

ଘଟଣା ଘଟିଲା । ଆଲାନ୍ ସୂର୍ଯ୍ୟୋଦୟବେଳେ ଜଙ୍ଗଲକୁ ଯାଇ ସଂଧ୍ୟା ସୁଦ୍ଧା ଘରକୁ ଫେରିଲେ ନାହିଁ । ଅନ୍ଧକାର ରାତ୍ରି ମାଡ଼ି ଆସିଲା । ତା' ସଙ୍ଗେ ମଧ୍ୟ ଝଡ଼ ଲାଗି ରହିଥିଲା । ସମସ୍ତେ ଉଦ୍‌ବିଗ୍ନ ମନରେ ରାତ୍ରିଭୋଜନପାଇଁ ବସିଥିବାବେଳେ ଆଲାନ୍ ହଠାତ୍ ଘର ଭିତରକୁ ପଶିଆସିଲେ । ଆଲାନ୍‌ଙ୍କ ପିତା କହିଲେ – "ଆଲାନ୍ ! ତୁମେ ଆଜି ବହୁତ ବିଳମ୍ବ କଲ । ମେଣ୍ଟିଥ୍ ମଧ୍ୟ ଶିକାରକୁ ଯାଇଥିଲେ । କିନ୍ତୁ ସେ ସଂଧ୍ୟା ପୂର୍ବରୁ ଫେରିଲେ । ତୁମେ ସମସ୍ତ ଦିନ ଜଙ୍ଗଲରେ ରହି ମଧ୍ୟ ଶୂନ୍ୟ ହସ୍ତରେ ଫେରି ଆସିଚ ।" ଆଲାନ୍‌ଙ୍କ ଚକ୍ଷୁରେ ହିଂସ୍ରଭାବ ପ୍ରକାଶ ପାଇଲା । ଗୋଟିଏ ବ୍ୟାଗ୍‌ରୁ ଏକ ଛିନ୍ନ ମସ୍ତକ ବାହାର କରି ଟେବୁଲ ଉପରେ ଥୋଇ ସେ କହିଲେ ଯେ ପିତା ଯାହା କହିଛନ୍ତି ତାହା ମିଛ । ସେହି ଛିନ୍ନ ମସ୍ତକଟି ଆଲାନ୍‌ଙ୍କ ମାମୁଁଙ୍କ ହତ୍ୟାକାରୀ ଜଣେ ଦୁର୍ଦ୍ଧର୍ଷ ଦସ୍ୟୁର ଥିଲା । ଆଲାନ୍ କିପରି ଏକାକୀ ଏହା କରିପାରିଲେ ତାହା ପଚାରିବାରୁ ସେ କିଛି କହିଲେ ନାହିଁ । ପରେ ତାଙ୍କ ଦେହରେ ହୋଇଥିବା ଦୁଇ-ତିନିଟି ଆଘାତ ଦୃଷ୍ଟିରୁ ସେ ଯେ ଶତ୍ରୁ ସଙ୍ଗେ ଯୁଦ୍ଧକରି ତାକୁ ହତ୍ୟା କରିଛନ୍ତି ଏହା ପ୍ରମାଣିତ ହେଲା ।

ଏହା ପରେ ଆଲାନ୍ ଯେପରି ବାହାରକୁ ଯାଇପାରିବେ ନାହିଁ ତାର ସମସ୍ତ ବ୍ୟବସ୍ଥା ତାଙ୍କ ପିତା କଲେ । ଆଲାନ୍ ଏକ ପ୍ରକାର ବନ୍ଦୀହୋଇ ରହିଲେ । କିନ୍ତୁ କୌଣସିପ୍ରକାର ବାଧା ଓ ବନ୍ଧନ ଆଲାନ୍‌କୁ ଅଟକାଇ ରଖି ପାରିଲା ନାହିଁ । ସେ ରାତ୍ରିରେ ଦୁର୍ଗରୁ ଖସିଯାଇ ପରେ ପରେ ଆଉ ତିନୋଟି କଟା ମୁଣ୍ଡ ନେଇ ଫେରିଥିଲେ ।

ଆଲାନ୍‌ଙ୍କ ଶକ୍ତି ଓ ସାହସରେ ଦସ୍ୟୁମାନେ ଭୀତତ୍ରସ୍ତ ହୋଇପଡ଼ିଲେ । ସେମାନେ ମନେକଲେ ଯେ ଆଲାନ୍ ନିଶ୍ଚିତଭାବରେ ଏକ ଯାଦୁକରୀ ଶକ୍ତି ପାଇଛନ୍ତି ଏବଂ କୌଣସି ଅସ୍ତ୍ର ତାଙ୍କର କ୍ଷତି କରିପାରିବ ନାହିଁ । ଏପରି ସମୟ ଆସିଲା ଯେ କେବଳ ଆଲାନ୍‌ଙ୍କ ଶିଙ୍ଗାନାଦରେ ଅତି ସାହସୀ ଦସ୍ୟୁ ଦଳପତି ମଧ୍ୟ ଭୀତତ୍ରସ୍ତ ହେଉଥିଲେ ।

ଏହା ସତ୍ତ୍ୱେ ଦସ୍ୟୁମାନଙ୍କର ଉପଦ୍ରବ ଲାଗିରହିବାରୁ ସେମାନଙ୍କୁ ଢ଼ବତ କରିବାକୁ ଏକ ସେନାବାହିନୀ ପ୍ରେରଣ କରାଯାଇଥିଲା । ମୁଁ (ମେଣ୍ଟିଥ୍) ନିଜେ ସେମାନଙ୍କ ସହିତ ଯାଇଥିଲି । ଅତର୍କିତ ଭାବରେ ଦସ୍ୟୁମାନଙ୍କ ଉପରେ ଆକ୍ରମଣ କରାଯାଇଥିଲା । ଶିଶୁ, ସ୍ତ୍ରୀ ଓ ପୁରୁଷ ନିର୍ବିଶେଷରେ ସମସ୍ତଙ୍କୁ ହତ୍ୟା କରାଗଲା । କେତେକ ଲୁଚି ଖସି ଚାଲିଯାଇଥିଲେ । ସମଗ୍ର ଗ୍ରାମଟି ଧ୍ୱଂସ ସ୍ତୂପରେ ପରିଣତ ହୋଇଥିଲା । ଗୋଟିଏ ଗୃହରେ ଆମେମାନେ ଏକ ବାଳିକାକୁ ଦେଖିଲୁ । ସେ ଆଲାନ୍‌ଙ୍କ ରକ୍ତାକ୍ତ ଖଡ୍‌ଗ ଦେଖି ଭୟକରି ନ ଥିଲା । ସେଠାରେ ଅବିଚଳିତ ଭାବରେ ଠିଆହୋଇ ମୃଦୁ ମୃଦୁ ହସୁଥିଲା । ତାର ସୌନ୍ଦର୍ଯ୍ୟ ଓ ସାହସ ସମସ୍ତଙ୍କୁ ବିସ୍ମିତ କରିଥିଲା । ତାକୁ ନମାରିବା ପାଇଁ ମୁଁ ଆଲାନ୍‌ଙ୍କୁ ଅନୁରୋଧ କରିଥିଲି । ସେହି ବାଳିକାଟିକୁ ଦୁର୍ଗକୁ ଅଣାଗଲା ଏବଂ ପରେ ସେ ଆନ୍‌ଟଲାଇଲ୍ ନାମରେ ପରିଚିତ ହେଲା ।

ବହୁଦିନ ଧରି ଆଲାନ୍ ଆନଟ୍‌କୁ ଘୃଣା କରୁଥିଲେ । ତାକୁ ଦେଖିଲେ ଆଲାନ୍‌ଙ୍କ ଚକ୍ଷୁ ରକ୍ତବର୍ଣ୍ଣ ଧାରଣ କରୁଥିଲା । କିନ୍ତୁ କ୍ରମେ ସେ ଯେ ଦସ୍ୟୁ ସନ୍ତାନ ନୁହେଁ ଏବଂ ଦସ୍ୟୁଦ୍ୱାରା ଅପହୃତ କାହାର ଏକ ଆଦରର ଧନ ଏହା ବୋଧ ହେଲା । ଏହି ଧାରଣା ଦୃଢ଼ ହେବାରୁ ସେ ତାକୁ ସ୍ନେହ କଲେ । ଆନଟ୍‌ଙ୍କ କଣ୍ଠସ୍ୱର ଓ ବୀରାବାଦନ ଆଲାନ୍‌ଙ୍କର ଅବସାଦ ଓ ଗମ୍ଭୀରତାକୁ ଦୂର କରୁଥିଲା । ଆନଟ୍‌ଲାଇଲ୍ ସବୁଠାରୁ ସୁନ୍ଦରୀ ଥିଲେ । ତାଙ୍କର ସୌନ୍ଦର୍ଯ୍ୟ ଓ ନିରୀହ ଭାବ ତାଙ୍କୁ ଆଲାନ୍‌ଙ୍କ ପରିବାର ଅନ୍ତର୍ଭୁକ୍ତ କରିଥିଲା । ଆଙ୍ଗସ୍ ତାଙ୍କୁ ଭଗ୍ନି ଦୃଷ୍ଟିରେ ଦେଖୁଥିଲେ । ଯେ ତାଙ୍କୁ ଦେଖୁଥିଲା ସେ ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍‌ଧ ହେଉଥିଲା ।

ଆଣ୍ଡରସନ୍ ସ୍ମିତ ହସି କହିଲେ— ମେଣ୍ଟିଥ୍ ମଧ୍ୟ ସେଥିରୁ ବାଦ୍ ଯାଇ ନାହାନ୍ତି । କ୍ଷଣକୋପୀ ଆଲାନ୍ ମଧ୍ୟ ତାଙ୍କୁ ଭଲପାଏ ଏବଂ ସେ ମେଣ୍ଟିଥ୍‌ଙ୍କ ପ୍ରତି ଏକ ନିଶ୍ଚିତ ବିପଦ । ମେଣ୍ଟିଥ୍ ତାହା

ହସରେ ଉଡ଼ାଇଦେବାକୁ ଚେଷ୍ଟା କରିଥିଲେ ମଧ ତାଙ୍କର ମୁଖ ରକ୍ତିମ ହୋଇଥିଲା। ସେ କହିଲେ— ଆଲାନ୍ କେବେ ପ୍ରେମପ୍ରାର୍ଥୀ ହେବେନାହିଁ। ମୁଁ ନିଜେ ତାଙ୍କୁ ଭଲପାଉଥିଲେ ମଧ ସେ ଉଚ୍ଚବଂଶଜା ହୋଇନଥିବାରୁ ତାଙ୍କୁ ବିବାହ କରିହେବନାହିଁ।

ଅନୁଚରବର୍ଗ ଓ ବନ୍ଧୁମାନେ ଆଙ୍ଗସ୍ ଅପେକ୍ଷା ଆଲାନ୍‌ଙ୍କୁ ବେଶି ସମ୍ମାନ କରୁଥିଲେ। ଆଙ୍ଗସ୍ ଜଣେ ସାହସୀ ସୈନିକ ଓ ବିଜ୍ଞ-ବ୍ୟକ୍ତି। କିନ୍ତୁ ତାଙ୍କ ନିକଟରେ ଆଲାନ୍‌ଙ୍କ ଅସାଧାରଣ ଚରିତ୍ର ନଥିଲା। ଆଲାନ୍‌ଙ୍କ ଶକ୍ତି ଓ ସାହସ ସମସ୍ତେ ଜାଣିଥିଲେ। ଏତଦ୍ ବ୍ୟତୀତ ଅନେକ ବିଶ୍ୱାସ କରୁଥିଲେ ଯେ ଆଲାନ୍ ଦିବ୍ୟଦୃଷ୍ଟିରେ ଭବିଷ୍ୟତ୍ କହିପାରୁଥିଲେ। ମେଣ୍ଟିଥ୍‌ଙ୍କ ଗପ ଶେଷ ହେଲା। ସମସ୍ତେ ନିଦ୍ରାଦେବୀଙ୍କ କୋଳରେ ଆଶ୍ରୟ ନେଲେ।

## ଆନଟ୍ଲାଇଲ୍

ଦୁର୍ଗର ଅତିଥିଗଣ ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗକଲେ। ମେଣ୍ଟିଥ୍ ଆଣ୍ଡରସନ୍‌ଙ୍କ ସଙ୍ଗେ କିଛି ସମୟ ଏକାନ୍ତରେ କଥା ହେଲେ। କାପ୍ଟେନ୍ ଡାଲ୍‌ଗେଟି ତାଙ୍କ ସାଞ୍ଜୁ ସଫା କରୁଥିଲେ। ମେଣ୍ଟିଥ୍ ତାଙ୍କ ଉଦ୍ଦେଶ୍ୟରେ କହିଲେ— ତୁମେ ଯଦି ଆମ ସୈନ୍ୟଙ୍କ ସହ ନ ମିଶିବ ତେବେ ଦୁର୍ଗ ଛାଡ଼ି ଚାଲିଯିବା ଭଲହେବ। ଡାଲ୍‌ଗେଟି ପ୍ରାତଃଭୋଜନ ପୂର୍ବରୁ ଯିବାପାଇଁ ଅନିଚ୍ଛା ପ୍ରକାଶ କଲେ। କିନ୍ତୁ ମେଣ୍ଟିଥ୍ ତାଙ୍କର ନିଷ୍ପତ୍ତି ଜାଣିବାକୁ ଇଚ୍ଛା କରିବାରୁ ସେ କହିଲେ— ତୁମ ଦରମା ମୋତେ ଉପଯୁକ୍ତ ମନେହେଲେ ମୁଁ ତୁମ ପକ୍ଷରେ ଯୁଦ୍ଧ କରିବି। ମେଣ୍ଟିଥ୍ କହିଲେ— ବର୍ତ୍ତମାନ ପାଇଁ ଆମେ ସ୍ୱଳ୍ପ ଦରମା ଦେବୁ। ତାହା ଦୈନିକ ଏକ କ୍ରାଉନ୍ ହେବ। ବର୍ତ୍ତମାନ ଅର୍ଦ୍ଧ-କ୍ରାଉନ୍ ମିଳିବ ଓ ଯୁଦ୍ଧ ପରେ ଅପର ଅର୍ଦ୍ଧକ ମିଳିବ। ଡାଲ୍‌ଗେଟି ଏହା ପୂର୍ଣ୍ଣଭାବରେ ଅସ୍ୱୀକାର କଲେ। କିନ୍ତୁ ଡାଲ୍‌ଗେଟିଙ୍କ ଜମିଦାରୀ ବିଦ୍ରୋହୀମାନେ କିଣିନେବା ଶୁଣିଛନ୍ତି ବୋଲି ସିବାଲ୍‌ଡ୍ କହିଲେ। ଏ ଖବର ଡାଲ୍‌ଗେଟି

ଭୀଷଣ ରାଗି ମେଣ୍ଟିଥ୍‌ଙ୍କ ପକ୍ଷ ଅବଲମ୍ବନ କଲେ ଏବଂ ତାଙ୍କ ଅଶ୍ୱ ଗୁଷ୍ତାଭ୍‌ଙ୍କୁ ଏ ଖବର ଜଣାଇଦେବାକୁ ଗଲେ।

ଲର୍ଡ଼ ମେଣ୍ଟିଥ୍ ଭୃତ୍ୟମାନଙ୍କ ସହ ବୈଠକଖାନାକୁ ଗଲେ। ସେଠାରେ ସେ ଆଙ୍ଗସ୍‌ଙ୍କୁ ତାଙ୍କ ଇଂରେଜ ବନ୍ଧୁଙ୍କ ସହ ଦେଖିଲେ। ଆଲାନ୍ ସେଠାରେ ନିଆଁ ପାଖରେ ବସି ନିଜ ଚିନ୍ତାରେ ମଗ୍ନ ଥିଲେ। ନୂତନ ଅତିଥିମାନଙ୍କ ଆଗମନ ଅପେକ୍ଷାରେ ସମସ୍ତେ ସେଠାରେ ବସିଲେ। ଦୁର୍ଗରେ ବସୁଥିବା ସଭାରେ ଯୋଗ ଦେବାପାଇଁ ସ୍କଟ୍‌ଲାଣ୍ଡର ସମସ୍ତ ଦଳପତିଙ୍କ ନିକଟକୁ ନିମନ୍ତ୍ରଣ ପଠାଯାଇଥିଲା। ରାଜାଙ୍କ ପକ୍ଷରେ ଯୁଦ୍ଧ କରିବା ନ କରିବା ନିଷ୍ପତ୍ତି ଏହି ସଭା ଉପରେ ନିର୍ଭର କରୁଥିଲା। ମେଣ୍ଟିଥ୍ ଏଥିପାଇଁ ଭାରି ଉଦ୍‌ବିଗ୍ନ ଥିଲେ।

କ୍ରମେ କ୍ରମେ ସମସ୍ତ ଦଳପତି ସେମାନଙ୍କ ଅନୁଚରମାନଙ୍କ ସହ ଆସିବାକୁ ଲାଗିଲେ। ବୈଠକଖାନାରେ ସମସ୍ତେ ରହିବା ପାଇଁ ବ୍ୟବସ୍ଥା କରିବା ସମ୍ଭବପର ନ ହେବାରୁ ଆଙ୍ଗସ୍ ବିବ୍ରତ ହୋଇପଡ଼ିଲେ। ଆଲାନ୍ ହଠାତ୍ ଉଠି ସମସ୍ତଙ୍କୁ ମୁକ୍ତ ଆକାଶ ତଳେ ନିଜନିଜର ଆଶ୍ରୟ ସ୍ଥିର କରିବାକୁ ନିର୍ଦ୍ଦେଶ ଦେଲେ। ଯେଉଁମାନେ ଯୁଦ୍ଧରେ ପ୍ରାଣବଳି ଦେବେ ସେମାନଙ୍କ ପକ୍ଷରେ ମୁକ୍ତ ଆକାଶ ତଳେ ଉନ୍ମୁକ୍ତ ପ୍ରାନ୍ତର ହିଁ ବସବାସ ନିମିତ୍ତ ଭଲ ସ୍ଥାନ ବୋଲି ସେ କହିଲେ। ଆଲାନ୍ ଭବିଷ୍ୟଦ୍‌ଦ୍ରଷ୍ଟା ଥିବା ସମସ୍ତେ ଜାଣିଥିଲେ। ତେଣୁ ତାଙ୍କର ନିର୍ଦ୍ଦେଶ ଆଗନ୍ତୁକ ବନ୍ଧୁମାନଙ୍କ ପକ୍ଷରେ ଭୀତି ସଂଚାର କରିବାର ଯଥେଷ୍ଟ କାରଣ ଥିଲା। ସେପରି ନକହିବା ପାଇଁ ଆଙ୍ଗସ୍ ଆଲାନ୍‌ଙ୍କୁ ନିର୍ଦ୍ଦେଶ ଦେଲେ। ଆଲାନ୍ ମୁହଁକୁ ହାତରେ ଘୋଡ଼ାଇ ବେଞ୍ଚ ଉପରେ ବସିରହିଲେ। ବୀଣା ସହ ଆନଟ୍‌ଲାଇଲ୍‌ଙ୍କୁ ପଠାଇବାକୁ ନିର୍ଦ୍ଦେଶ ଦେଇ ଆଙ୍ଗସ୍ ଅତିଥିମାନଙ୍କ ସହ ପ୍ରାତଃଭୋଜନ ଶେଷ କରିବାକୁ ଚାଲିଗଲେ। ସେଠାରେ ମେଣ୍ଟିଥ୍ କେବଳ ପଛରେ ରହିଲେ।

ଆନଟ୍‌ଲାଇଲ୍ ଗୃହ ମଧ୍ୟରେ ପ୍ରବେଶ କଲେ। ତାଙ୍କ ବୟସ ପ୍ରାୟ ଅଠର ହେବ। ମସ୍ତକରେ ସୁବର୍ଣ୍ଣ ବର୍ଣ୍ଣର ଘନ କେଶଗୁଚ୍ଛ

ସହ ମୁଖର ସ୍ୱଭାବସୁଲଭ ମୃଦୁ ହସ ତାଙ୍କ ସୌନ୍ଦର୍ଯ୍ୟ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ସମସ୍ତଙ୍କୁ ମୁଗ୍ଧ କରୁଥିଲା। ଆନଟ୍‌ଲୋଇଲ୍ ମେଣ୍ଟିଥ୍‌ଙ୍କୁ ଦେଖି ଏକ ସଲଜ୍ଜ ହସ ହସିଲେ। ଆଲାନ୍ ମନକୁ ଶାନ୍ତ କରିବାକୁ ସଙ୍ଗୀତ ଶୁଣିବାକୁ ଚାହାନ୍ତି ବୋଲି ମେଣ୍ଟିଥ୍ କହିବାରୁ ଆନଟ୍ କହିଲେ – ସେ ମୋର ପ୍ରାଣରକ୍ଷାକାରୀ। ତେଣୁ ମୋର ସଙ୍ଗୀତ ଉପରେ ତାଙ୍କର ଅଧିକାର ଅଛି। ତା' ସଙ୍ଗେ ତୁମର ମଧ୍ୟ। କାରଣ ତୁମେ ମଧ୍ୟ ମୋତେ ବଞ୍ଚାଇବା ପାଇଁ ସାହାଯ୍ୟ କରିଥିଲ। ସେ ଆଲାନ୍‌ଙ୍କ ନିକଟରେ ମେଞ୍ଚ ଉପରେ ବସି ବୀଣାରେ ସ୍ୱର ଧରାଇଲେ। ଏକ ପୁରାତନ ଗୀତରେ ଆଲାନ୍‌ଙ୍କ ବିମର୍ଷତା ଦୂର ହୋଇଗଲା। ଚକ୍ଷୁର ବନ୍ୟ-ହିଂସ୍ରତା ଓ ନିଷ୍ଠୁରତା ଦୂର ହୋଇ ତାହା ଆନନ୍ଦରେ ଉଜ୍ଜ୍ୱଳ ହେଲା। ଆନଟ୍‌ଙ୍କ ସଙ୍ଗୀତ ତାଙ୍କର ବିମର୍ଷତା ଦୂର କରିଥିବାରୁ ଆନଟ୍‌ଙ୍କୁ କିଛି ପୁରସ୍କାର ଦେବାପାଇଁ ମେଣ୍ଟିଥ୍ ଆଲାନ୍‌ଙ୍କୁ ଅନୁରୋଧ କଲେ। ଆଲାନ୍ ନୀରବରେ ସେଠାରୁ ଉଠି ଚାଲିଗଲେ। ସେ ଫେରିବାବେଳକୁ ମେଣ୍ଟିଥ୍ ଓ ଆନଟ୍ ପାଖାପାଖି ବସି ଆଲାନ୍‌ଙ୍କ ବିମର୍ଷତା ବିଷୟରେ କଥା ହେଉଥିଲେ। ଆଲାନ୍‌ଙ୍କୁ ଦେଖି ସେମାନେ ପରସ୍ପରଠାରୁ ଦୂରେଇ ଗଲେ। କିନ୍ତୁ ଏଥିରେ ଆଲାନ୍ ଭୀଷଣ ରାଗିଗଲେ। କିନ୍ତୁ ରାଗ ସମ୍ବରଣ କରି କାଷ୍ଠର ଗୋଟିଏ ବାକ୍ସ ଆନଟ୍ ହାତକୁ ବଢ଼ାଇଦେଇ କହିଲେ, "ମୋର ଦୁଃଖିନୀ ମାଆଙ୍କର ସମସ୍ତ ଅଳଙ୍କାର ଏଥିରେ ଅଛି।" ବାକ୍ସ ଖୋଲା ହେବାରୁ ଦେଖାଗଲା ମୂଲ୍ୟବାନ୍ ଅଳଙ୍କାରରେ ତାହା ପୂର୍ଣ୍ଣ। ଆନଟ୍‌ଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ନିର୍ଗତ ହେଲା। ଏ ମହାମୂଲ୍ୟ ପୁରସ୍କାରର ସେ ଅନୁପଯୁକ୍ତା ବୋଲି ଜଣାଇ କେବଳ ଏକ ମୁଦ୍ରିକା ତାଙ୍କ ଅନୁଗ୍ରହର ନିଦର୍ଶନ ସ୍ୱରୂପ ଗ୍ରହଣ କଲେ। କିନ୍ତୁ ମୁଦ୍ରିକା ପ୍ରତି ଦୃଷ୍ଟିପାତ କରି ତାଙ୍କ ମୁଖ ରକ୍ତଶୂନ୍ୟ ହୋଇଗଲା ଓ ମୁଦ୍ରିକାଟି ତଳେ ଖସି ପଡ଼ିଲା। ମୁଦ୍ରିକାରେ ଦୁଇଟି ଉନ୍ମୁକ୍ତ କୃପାଣଯୁକ୍ତ ଏକ ଖପୁରୀର ଚିତ୍ର ଥିଲା। ଆଲାନ୍ ତାହା ଦେଖି ଦୁଃଖ କଲେ। ଏହା ଏକ ଅଶୁଭ ଶକୁନର ପ୍ରତୀକ ଥିଲା। ମୃତଭାଇଙ୍କ ସ୍ମାରକୀ ସ୍ୱରୂପ

ତାଙ୍କ ମାଆ ତାହା ସର୍ବଦା ପିନ୍ଧୁଥିଲେ। ଏ ପ୍ରକାର ବିଶ୍ୱାସକୁ ଅବଶ୍ୟ ମେଣ୍ଟିଥ୍ ହସରେ ଉଡାଇ ଦେଉଥିଲେ। ତାଙ୍କ ଦିବ୍ୟଦୃଷ୍ଟିକୁ ହସରେ ଉଡ଼ାଇ ନଦେବା ପାଇଁ ମେଣ୍ଟିଥ୍‌କୁ ଆଲାନ୍ ଅନୁରୋଧ କଲେ। କାରଣ ସେ ତିନିଥର ତାଙ୍କ ଦିବ୍ୟ ଦୃଷ୍ଟିରେ ଜଣେ ଉଚ୍ଚଭୂମିର ଅଧିବାସୀ ମେଣ୍ଟିଥ୍‌କୁ ଛୁରିକାଘାତ କରୁଥିବା ଦେଖିଛନ୍ତି। ସେ ବ୍ୟକ୍ତିଟି କିଏ ମେଣ୍ଟିଥ ଜାଣିବାକୁ ଚାହିଁଲେ ଏବଂ କହିଲେ— ମୋ ଖଡ୍‌ଗ ମୋତେ ସେଥିରୁ ରକ୍ଷା କରିପାରିବ। ଆଲାନ୍ କହିଲେ— ''ଆତତାୟୀର ମୁଖ ସର୍ବଦା ବିପରୀତ ଦିଗକୁ ଥିବାରୁ ମୁଁ ତାହାକୁ ଚିହ୍ନିପାରିନାହିଁ। କିନ୍ତୁ ତାଙ୍କ ଖଡ୍‌ଗ ଯେ ତାଙ୍କୁ ରକ୍ଷା କରିପାରିବ ନାହିଁ ଏ ବିଷୟରେ ମୁଁ ନିଶ୍ଚିତ।'' ମେଣ୍ଟିଥ୍ ମୃତ୍ୟୁକୁ ଭୟ କରନ୍ତି ନାହିଁ ବୋଲି କହି ସେ କକ୍ଷରୁ ନିଷ୍କ୍ରାନ୍ତ ହେଲେ ଏବଂ ଦଳପତିମାନଙ୍କ ସହ ମିଶିଲେ। ଆନଟ୍ ଧୀରେ ଧୀରେ ନିଜ ପ୍ରକୋଷ୍ଠ ଅଭିମୁଖରେ ଚାଲିଗଲେ।

## ଯୁଦ୍ଧମନ୍ତ୍ରଣା

ସେଦିନ ପୂର୍ବାହ୍ଣରେ ଦୁର୍ଗଟି ଜନସମାଗମରେ ପୂର୍ଣ୍ଣ ହୋଇଯାଇଥିଲା। ଦଳପତିମାନେ ସେମାନଙ୍କ ଅନୁଚରମାନଙ୍କ ସହ ଆସି ବୈଠକଖାନାରେ ଜମା ହୋଇଥିଲେ। ଦଳପତିମାନଙ୍କ ମଧ୍ୟରୁ ଅଧିକାଂଶ ରାଜାଙ୍କ ପ୍ରତି ଅନୁରକ୍ତ ଥିଲେ ଏବଂ ତାଙ୍କପାଇଁ ଯୁଦ୍ଧ କରିବାକୁ ଆସିଥିଲେ। ଆର୍ଗାଇଲ୍‌ର ମାର୍କୁଇସ୍ ରାଜାଙ୍କ ବିପକ୍ଷରେ ଯୁଦ୍ଧ କରୁଥିବାରୁ ସେମାନେ ମାର୍କୁଇସ୍‌ଙ୍କୁ ଘୃଣା କରୁଥିଲେ।

ଆର୍ଗାଇଲ୍‌ର ଦଳପତି ଜଣେ ଶକ୍ତିଶାଳୀ ଓ କ୍ଷମତାପନ୍ନ ବ୍ୟକ୍ତି ଥିଲେ। ତାଙ୍କ ଅନୁଚରମାନେ ତାଙ୍କୁ ଗଭୀର ଶ୍ରଦ୍ଧା ଓ ଭକ୍ତି କରୁଥିଲେ। କିନ୍ତୁ ଉଚ୍ଚଭୂମି ଅଞ୍ଚଳର ଅଧିକାଂଶ ଦଳପତି ତାଙ୍କୁ ଘୃଣା କରୁଥିଲେ। ସେ ସ୍ୱାର୍ଥପର ଓ ଉଚ୍ଚାଭିଳାଷୀ ଥିଲେ। ସେ ଜଣେ ନିଷ୍ଠୁର ପ୍ରକୃତିର ଲୋକ ଥିଲେ ଏବଂ ବହୁତ ଲୋକ ତାଙ୍କଦ୍ୱାରା ନିର୍ଯ୍ୟାତିତ ହୋଇଥିଲେ।

ତେଣୁ ଏହି ସୁଯୋଗରେ ତାଙ୍କୁ ଧ୍ୱଂସ କରିଦେବାକୁ ଅନେକ ଚାହୁଁଥିଲେ।

କିଛି ସମୟ ପାଇଁ ସମସ୍ତେ ନୀରବ ରହିଲେ। ତା'ପରେ ମନ୍ତ୍ରଣା ଆରମ୍ଭ ହେଲା। ଆଙ୍ଗସ୍‌ଙ୍କ ନିର୍ଦ୍ଦେଶରେ ମେଣ୍ଟିଥ୍ ଉଠି ରାଜାଙ୍କର ସାହାଯ୍ୟ କାହିଁକି ଦରକାର ତାହା ଦଳପତିମାନଙ୍କୁ ବୁଝାଇଥିଲେ। ନିମ୍ନଭୂମି ଅଞ୍ଚଳର ଲୋକମାନେ ବିଦ୍ରୋହୀମାନଙ୍କୁ ସାହାଯ୍ୟ କରିବା ପାଇଁ ଦଳେ ସୈନ୍ୟ ପଠାଇଥିବାରୁ ସ୍କଟ୍‌ଲାଣ୍ଡ ଏ ଯୁଦ୍ଧରେ ସଂଶ୍ଳିଷ୍ଟ ହେଲା। ତେଣୁ ଉଚ୍ଚଭୂମି ଅଞ୍ଚଳର ଅଧିବାସୀମାନେ ନିମ୍ନଭୂମି ଅଞ୍ଚଳର ଅଧିବାସୀମାନଙ୍କୁ ଏ ପ୍ରକାର କାର୍ଯ୍ୟଯୋଗୁଁ ଏକ ଶିକ୍ଷା ଦେବା ଦରକାର। କରତାଳିରେ ସଭାଗୃହ କମ୍ପିଉଠିଲା। କିନ୍ତୁ ବକ୍ତବ୍ୟର କିଛି ଅଂଶ ବାକି ଥିଲାପରି ସମସ୍ତେ ଅନୁଭବ କଲେ। ଶେଷରେ ଏ ସମସ୍ତଙ୍କୁ ପରିଚାଳିତ କରିବା ନିମିତ୍ତ ଜଣେ ସେନାପତିଙ୍କର ଆବଶ୍ୟକତା କଥା ପଡ଼ିଲା। ବିଭିନ୍ନ ନେତାଙ୍କ ନାମ ପ୍ରସ୍ତାବ କରାଗଲା। କିନ୍ତୁ ଦଳପତିମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଏପରି ଈର୍ଷା ଥିଲା ଯେ ତାଙ୍କ ମଧ୍ୟରୁ ଜଣେ ସୈନ୍ୟ ପରିଚାଳନା କରିବେ ଏହା କେହି ଚାହୁଁନଥିଲେ। ଶେଷରେ ଜଣେ ଉଠିପଡ଼ି କହିଲେ ଯେ ରାଜାଙ୍କଦ୍ୱାରା ପ୍ରେରିତ ସେନାଧ୍ୟକ୍ଷ ଯଦି ସାହସୀ ଓ ଅଭିଜ୍ଞ ହୋଇଥାଆନ୍ତି; ତେବେ ତାଙ୍କୁହିଁ ସେମାନେ ମାନିବେ। କିନ୍ତୁ ସେଭଳି ବ୍ୟକ୍ତି ବାହାର କରିବା ସହଜ ନଥିଲା। ଏହି ସମୟରେ ଆଲାନ୍ ଆଣ୍ଡର୍‌ସନ୍‌ଙ୍କ ହସ୍ତ ଧରି ସମସ୍ତଙ୍କ ସମ୍ମୁଖରେ ଛିଡ଼ା କରାଇ ସେ ଉପସ୍ଥିତ ସେନାଧ୍ୟକ୍ଷ ବୋଲି ପରିଚୟ ଦେଲେ।

ଜଣେ ଭୃତ୍ୟ ସେନାଧ୍ୟକ୍ଷ ହୋଇ ସେମାନଙ୍କୁ ପରିଚାଳିତ କରିବ ଏଥିରେ ଅନେକ ବିସ୍ମିତ ଓ ହତାଶ ହେଲେ। ଆଲାନ୍‌ଙ୍କ ବ୍ୟବହାରରେ ସମସ୍ତେ କ୍ଷୁବ୍ଧ ହେଲେ। ଏହି ସମୟରେ ଆଣ୍ଡର୍‌ସନ୍ ଭୃତ୍ୟର ପୋଷାକ ଦୂରକୁ ଫିଙ୍ଗିଦେଇ ଆଗକୁ ଆସି କହିଲେ— ମୁଁ ଏପର୍ଯ୍ୟନ୍ତ ନୀରବ ଥିଲି। ଆଉ କିଛି ସମୟ ପାଇଁ ମୁଁ ଛଦ୍ମବେଶରେ ରହିବାକୁ ଚାହୁଁଥିଲି। କିନ୍ତୁ ଆଲାନ୍ ଛଦ୍ମବେଶରେ ମଧ୍ୟ ଚିହ୍ନିପାରିଲେ ମତେ। ମୁଁ ମେଣ୍ଟରୋଜର ଆର୍ଲ୍‌ଜେମ୍‌ସ ଗ୍ରାହାମ୍। ସୈନ୍ୟ ପରିଚାଳନା କରିବା

ନିମିତ୍ତ ମୋତେହିଁ ରାଜା ନିର୍ଦ୍ଦେଶ ଦେଇଛନ୍ତି। ତା'ପରେ ରାଜାଙ୍କ ନିର୍ଦ୍ଦେଶନାମାଟି ସର୍ବସମକ୍ଷରେ ପଢ଼ିଲେ। ମଣ୍ଟ୍‌ରୋଜଙ୍କୁ ସେନାଧ୍ୟକ୍ଷରୂପେ ପାଇ ସର୍ବତ୍ର ଆନନ୍ଦ ଖେଳିଗଲା। ଗ୍ରାହାମ୍ ସାହସୀ, ଜ୍ଞାନୀ ଓ ଧୈର୍ଯ୍ୟଶାଳୀ ଥିଲେ। ସେ ଆର୍ଗାଇଲ୍ ମାର୍କୁଇସ୍‌ଙ୍କର ମଧ୍ୟ ପୁରାତନ ଶତ୍ରୁ ଥିଲେ। ତାଙ୍କର ବ୍ୟବହାର ଭଦ୍ରଜନୋଚିତ ଥିଲା। ତାଙ୍କର ସୁନ୍ଦର ସ୍ୱାସ୍ଥ୍ୟ, ଆକର୍ଷଣୀୟ ମୁଖଦୀପ୍ତି, ତୀକ୍ଷ୍ଣ ନାସା ଏବଂ ଧୂସର ଚକ୍ଷୁ ସମସ୍ତଙ୍କୁ ଅଭିଭୂତ କରୁଥିଲା। ତା'ପରେ ଦଳପତିମାନଙ୍କ ସହିତ କଥାବାର୍ତ୍ତା ଚାଲିଲା। ଆଲାନ୍ କିପରି ତାଙ୍କୁ ଚିହ୍ନିପାରିଲେ ଯେତେ ପଚାରିଲେ ମଧ୍ୟ କେବଳ ଆଲାନ୍‌ଙ୍କଠାରୁ ଗୋଟିଏ ହସ ଉତ୍ତରରେ ମିଳିଥିଲା। କାପ୍‌ଟେନ୍ ଡାଲ୍‌ଗେଟି ଆଗେଇ ଆସି ମଣ୍ଟ୍‌ରୋଜଙ୍କ ସହ କଥାବାର୍ତ୍ତା ଆରମ୍ଭକଲେ।

ସେ କହିଲେ – ଆପଣଙ୍କ ଅଧୀନରେ କାର୍ଯ୍ୟ କରିବାକୁ ସ୍ୱୀକୃତି ଦେଇ ମୁଁ ଆନନ୍ଦିତ ଓ ଗର୍ବ ଅନୁଭବ କରୁଛି। ଗତରାତ୍ରିରେ ଆଲାନ୍ ଟେବୁଲର ନିମ୍ନପାର୍ଶ୍ୱକୁ ମୋତେ ଟାଣିନେଇଥିବାରୁ ମୁଁ ମଧ୍ୟ ତାଙ୍କୁ କ୍ଷମାକରୁଛି। ସେ କେବଳ ମୋତେ ମୋର ଭବିଷ୍ୟତ ସେନାଧ୍ୟକ୍ଷଙ୍କ ନିମିତ୍ତ ଆସନ ଛାଡ଼ିଦେବାକୁ ନିର୍ଦ୍ଦେଶ ମାତ୍ର ଦେଇଥିଲେ। ମୁଁ ବୁଝିପାରିଲି ଆପଣ ଗତରାତ୍ରିରେ ମୋର ଆଦେଶ ଗ୍ରହଣ କରିବାକୁ କାହିଁକି କୁଣ୍ଠାବୋଧ କରିଥିଲେ।

ମଣ୍ଟ୍‌ରୋଜ ଡାଲ୍‌ଗେଟିଙ୍କୁ ଆଇରିସ୍ ସେନାମାନଙ୍କର ମେଜର୍ ପଦରେ ନିଯୁକ୍ତି ଦେଲେ। ଡାଲ୍‌ଗେଟି ଆନନ୍ଦରେ ତାହା ଗ୍ରହଣ କରି ନିଜର କୃତଜ୍ଞତା ତାଙ୍କୁ ଜଣାଇଲେ। ଏହି ସମୟରେ ଆଲାନ୍ ଜଣେ ଅନାକାଙ୍‌କ୍ଷିତ ଅତିଥିଙ୍କ ପାଇଁ ଜାଗା କରିଦେବା ନିମିତ୍ତ ସମସ୍ତଙ୍କୁ ନିର୍ଦ୍ଦେଶ ଦେଲେ। ଏହି ସମୟରେ ସଭାକକ୍ଷର ଦ୍ୱାର ଉଦ୍‌ଘାଟିତ ହେଲା ଏବଂ ଜଣେ ଦୀର୍ଘକାୟ ବୟସ୍କ ଲୋକ ପ୍ରବେଶ କଲେ ଓ ସମସ୍ତ ଦଳପତିଙ୍କ ଆଡ଼କୁ ଚାହିଁ କିଏ ସେନାଧ୍ୟକ୍ଷ ବୋଲି ଗର୍ବିତଭାବରେ ପଚାରିଲେ। ମଣ୍ଟ୍‌ରୋଜ ଆଗେଇଆସି ଆଗନ୍ତୁକ ସାର୍ ଡନ୍‌କାନ୍ କ୍ୟାମ୍ପ୍‌ବେଲ୍‌ଙ୍କୁ ନିଜର ପରିଚୟ ଦେଲେ। ଡନ୍‌କାନ୍ ମଣ୍ଟ୍‌ରୋଜଙ୍କୁ

ଭୃତ୍ୟବେଶରେ ଚିହ୍ନିପାରି ନଥିଲେ। ଏବେ ବିଦ୍ରୂପ କରି କହିଲେ ମଣ୍ଟ୍‌ରୋଜର ଆର୍ଲଙ୍କ ପରି ଖଳପ୍ରକୃତିର ଲୋକହିଁ ଏପରି ନିର୍ବୋଧ ଲୋକମାନଙ୍କ ପରିଚାଳକ ହୋଇପାରିବେ। ମଣ୍ଟ୍‌ରୋଜ କହିଲେ— ମୁଁ ସେପରି କିଛି ଦୁଷ୍କାର୍ଯ୍ୟ କରିନାହିଁ। ତୁମେ ଓ ତୁମର ବନ୍ଧୁମାନେହିଁ ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରିଛନ୍ତି। ଏହାପରେ ସେ ଆର୍ଗାଇଲ୍‌ର ମାର୍କୁଇସ୍‌ଙ୍କଠାରୁ କି ଖବର ଆଣିଚନ୍ତି ଜାଣିବାକୁ ଚାହିଁଲେ। ଡନ୍‌କାନ୍ କହିଲେ ଆର୍ଗାଇଲ୍‌ର ଦଳପତି ମୋର ବନ୍ଧୁ ଓ ସେନାଧକ୍ଷ। ଏଠାରେ କି ମନ୍ତ୍ରଣା ଚାଲିଛି ତାହା ଜାଣିବାକୁ ସେ ମତେ ଏଠାକୁ ପଠାଇଛନ୍ତି। ସମସ୍ତ ଦଳପତିଙ୍କୁ ଦେଖାଇ ମଣ୍ଟ୍‌ରୋଜ କହିଲେ— ଏମାନେ ସମସ୍ତେ ଆଙ୍ଗସ୍‌ଙ୍କ ବନ୍ଧୁ। ବନ୍ଧୁଙ୍କ ଗୃହରେ ମିଳିତ ହେବାରେ ଦୁରଭିସନ୍ଧି ରହିବାର କୌଣସି କାରଣ ନାହିଁ। ଏ କଳ୍ପନା କେବଳ ଆର୍ଗାଇଲ୍‌ର ଦଳପତି ହିଁ କରିପାରନ୍ତି। ଡନ୍‌କାନ୍‌ଙ୍କ ମନ୍ତବ୍ୟରେ ଦଳପତିମାନେ ଉତ୍‌କ୍ଷିପ୍ତ ହେବାରୁ ମଣ୍ଟ୍‌ରୋଜ ସମସ୍ତଙ୍କୁ ଶାନ୍ତକରି କହିଲେ— ସାର୍ ଡନ୍‌କାନ୍ କ୍ୟାମ୍‌ବେଲ୍ ଜଣେ ଦୂତରୂପେ ଆସିଛନ୍ତି। ତେଣୁ କହିବା ପାଇଁ ତାଙ୍କୁ ସମସ୍ତ ସୁବିଧା ଦେବା ଦରକାର। ଡନ୍‌କାନ୍‌ଙ୍କ ଉଦ୍ଦେଶ୍ୟରେ ସେ କହିଲେ— ଆମେ ସମସ୍ତେ ରାଜାଙ୍କର ଅନୁଗତ ପ୍ରଜା ଏବଂ ରାଜାଙ୍କ ନିର୍ଦ୍ଦେଶ ପାଇ ଆମେ ସମସ୍ତେ ଏକତ୍ରିତ ହୋଇଛୁ। ଆର୍ଗାଇଲ୍‌ର ଦଳପତି କ'ଣ ଚାହାନ୍ତି କୁହନ୍ତୁ। ଡନ୍‌କାନ୍ କହିଲେ— ଆର୍ଗାଇଲ୍‌ର ଦଳପତି ସ୍କଟ୍‌ଲାଣ୍ଡରେ ଯୁଦ୍ଧ ଚାହାନ୍ତି ନାହିଁ। ମୁଁ ଶାନ୍ତି ପ୍ରସ୍ତାବ ନେଇ ଆସିଛି। ମଣ୍ଟ୍‌ରୋଜ କହିଲେ— ଏହା ଯଦି ସତ୍ୟ ହୁଏ, ତେବେ ତୁମ ସାଥିରେ ମୁଁ ଜଣେ ଭଦ୍ରଲୋକ ପଠାଇବି। ତୁମେ ତାଙ୍କୁ ସଂଗରେ ନେଇ ଆର୍ଗାଇଲ୍‌ର ଦଳପତିଙ୍କ ସଙ୍ଗେ ଶାନ୍ତିର ସର୍ତ୍ତ ବିଷୟରେ କଥାବାର୍ତ୍ତା କରିବ। ଯଦି ସର୍ତ୍ତଗୁଡ଼ିକ ଆମର ଗ୍ରହଣ ଉପଯୋଗୀ ନହେବ ତେବେ ଯୁଦ୍ଧହେବ। ଡନ୍‌କାନ୍ ସେ କଥା ଗ୍ରହଣ କଲେ। ସେ ମେଣ୍ଟିଥ୍‌ଙ୍କୁ ଦେଖି କହିଲେ— ତୁମର ତରୁଣ ବୟସରେ ଏ ସବୁ ଘଟଣାରେ ସଂଶ୍ଳିଷ୍ଟ ହେବା ଦେଖି ମୁଁ ଦୁଃଖିତ। ଆଲାନ୍, ଆମେ ନା ଦସ୍ୟୁମାନଙ୍କ ବିରୁଦ୍ଧରେ ଏକାଠି ଯୁଦ୍ଧ କରିଥିଲେ?

ଆମେମାନେ କ'ଣ ପ୍ରକୃତରେ ପରସ୍ପର ବିରୁଦ୍ଧରେ ଯୁଦ୍ଧ କରିବା ? ତା'ପରେ ସେ ସଭାରୁ ବିଦାୟ ନେଇ ମେଣ୍ଟିଥ୍ ଓ ଆଲାନ୍‌ଙ୍କ ସହ ସଭାସ୍ଥଳ ଛାଡ଼ି ଚାଲିଗଲେ। ସାର୍ ଡନ୍‌କାନ୍ ଶାନ୍ତି ସମୟରେ ଜଣେ ସାଧୁବ୍ୟକ୍ତି ଓ ଯୁଦ୍ଧ ସମୟରେ ବିଶେଷ ସାହସୀ ଅଟନ୍ତି। ବହୁ ଦଳପତି ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ ଦେଖାଉଥିଲେ। କିନ୍ତୁ ବର୍ତ୍ତମାନ ସେ ଆର୍ଗାଇଲ୍ ପକ୍ଷରେ ଥିବାରୁ ଦଳପତିମାନଙ୍କର ବିରାଗଭାଜନ ହୋଇଥିଲେ। ସେ ଦରବାର ଛାଡ଼ିବା ସଙ୍ଗେ ସଙ୍ଗେ ମଣ୍ଟରୋଜ ଆଙ୍ଗସ୍‌ଙ୍କୁ କହିଲେ— ଡନ୍‌କାନ୍ ନିଶ୍ଚୟ ଆଲାନ୍ ଓ ମେଣ୍ଟିଥ୍‌ଙ୍କୁ ତାଙ୍କ ପକ୍ଷ ଅବଲମ୍ବନ କରିବା ନିମିତ୍ତ ପ୍ରବର୍ତ୍ତାଇବେ। ସେ ସେଥିରେ କୃତକାର୍ଯ୍ୟ ହେବେନାହିଁ ଜାଣିଥିଲେ ମଧ୍ୟ ସେ ସେମାନଙ୍କ ସହ ଏ ବିଷୟରେ କଥାବାର୍ତ୍ତା କରନ୍ତୁ ଏହା ମୁଁ ଚାହେଁ ନାହିଁ। ଏଣୁ ସଂଗୀତରେ ତାଙ୍କୁ ମଜାଇ ରଖିବା ଦରକାର।

ଆଙ୍ଗସ୍ ଭୃତ୍ୟଙ୍କ ଦ୍ୱାରା ଆନଟ୍‌କୁ ପଠାଇବାର ବ୍ୟବସ୍ଥା କଲେ। ଇନ୍‌ଭେରିରେ ରହୁଥିବା ଆର୍ଗାଇଲ୍‌ର ଦଳପତିଙ୍କ ନିକଟକୁ ଡନ୍‌କାନ୍‌ଙ୍କ ସହ କାହାକୁ ପଠାଇବାକୁ ହେବ ଏହା ସମସ୍ତେ ଚିନ୍ତା କରିବାକୁ ଲାଗିଲେ। ବିଶିଷ୍ଟ ଦଳପତିମାନେ ଦୂତ ହେବାରେ ନିଜ ନିଜର ମର୍ଯ୍ୟାଦା ନଷ୍ଟ ହେବ ବୋଲି ଅନୁଭବ କଲେ ଅନ୍ୟମାନେ ମାର୍କୁଇସ୍‌ଙ୍କୁ ଭୟ କରୁଥିଲେ। ସେମାନେ ଜାଣିଥିଲେ, ସେ ଚତୁର ଓ ନିଷ୍ଠୁର ସେ ଅସନ୍ତୁଷ୍ଟ ହେଲେ ତାଙ୍କର ଦୁର୍ଗ ଆକ୍ରମଣ କରି ଲୁଟତରାଜ ଆରମ୍ଭ କରିଦେବେ। ତେଣୁ ମଣ୍ଟରୋଜ କାପ୍‌ଟେନ୍ ଦାଲ୍‌ଗେଟିଙ୍କୁ ଦୂତରୂପେ ପଠାଇବାକୁ ନିଷ୍ପତ୍ତି କଲେ।

ସେ ଦାଲ୍‌ଗେଟିଙ୍କୁ କହିଲେ—ତୁମର ଉଚ୍ଚଭୂମି ଅଞ୍ଚଳରେ କୌଣସି ବନ୍ଧୁବାନ୍ଧବ ବା ଜମିଦାରୀ ନାହିଁ। ତେଣୁ ମାର୍କୁଇସ୍‌ଙ୍କ ବିରକ୍ତିରେ ତୁମର କିଛି କ୍ଷତି ହେବନାହିଁ। ଦାଲ୍‌ଗେଟି କହିଲେ—"ମୋର ବେକ ଉପରେ ମୁଣ୍ଡଟା ତ ଅଛି। ଯଦି ସେ ମୁଣ୍ଡ କାଟି ନେବାପାଇଁ ନିଷ୍ପତ୍ତି କରନ୍ତି, ତେବେ ମୁଁ କ'ଣ କରିବି ? ମୁଁ ଗୋଟିଏ ଘଟଣା ଜାଣିଛି ଯେଉଁଥିରେ ଜଣେ ସମ୍ମାନସ୍ପଦ ଦୂତଙ୍କୁ ଫାଶୀ ହୋଇଥିଲା।"

ମଣ୍ଟ୍ରୋଜ ଗମ୍ଭୀର ସ୍ୱରରେ କହିଲେ– ଯଦି ଆର୍ଗାଇଲ୍‌ର ଦଳପତି ତୁମର କୌଣସି କ୍ଷତି କରିବାର ଚିନ୍ତା କରନ୍ତି, ତେବେ ମୁଁ ଏପରି ପ୍ରତିଶୋଧ ନେବି ଯେ ସ୍କଟ୍‌ଲାଣ୍ଡ ସବୁଦିନ ପାଇଁ ମନେରଖିବ। ଡାଲ୍‌ଗେଟି କହିଲେ– ତାହାତ ମୋତେ କୌଣସି ସାହାଯ୍ୟ କରିବ ନାହିଁ। ବରଂ ମୋର ସାହସ ଦରକାର। ଆପଣଙ୍କ ଆଦେଶ ଅବମାନନା ମୁଁ କରିପାରିବି ନାହିଁ। ମୁଁ ଏତିକି ଜାଣେ ମୃତ୍ୟୁର ସମ୍ଭାବନା ଥିଲେ ମଧ୍ୟ ଜଣେ ସୈନିକ ପକ୍ଷରେ ତା'ର ସେନାପତିକୁ ମାନିବା ବିଧେୟ।

ମଣ୍ଟ୍ରୋଜ କହିଲେ– ଏହାହିଁ ବିରୋଚିତ କଥା। ତା'ପରେ ମଣ୍ଟରୋଜ ଡାଲ୍‌ଗେଟିଙ୍କୁ ଆବଶ୍ୟକୀୟ ନିର୍ଦ୍ଦେଶ ଦେଇ ଶେଷରେ କହିଲେ–କାପ୍ଟେନ, ତୁମେ ସଦାସର୍ବଦା ଚକ୍ଷୁ ଓ କର୍ଣ୍ଣକୁ ସତର୍କ କରି ଆର୍ଗାଇଲ୍‌ରେ କିପରି ଯୁଦ୍ଧସଜ୍ଜା ଲାଗିଛି ତାହା ଦେଖି ମୋତେ ଠିକିଜିଖି ବିବରଣୀ ଦେବ।

ଡାଲ୍‌ଗେଟି ସହାସ୍ୟ ବଦନରେ ତାଙ୍କ ଆଦେଶ ପାଳିବାକୁ ପ୍ରତିଶ୍ରୁତି ଦେଇ ବିଦାୟ ନେଲେ।

## ଡନ୍‌କାନ୍ ଓ ଆନଟ୍‌ଲୋଇଲ୍‌ଙ୍କ ସାକ୍ଷାତ୍

ସଭାସ୍ଥଳଠାରୁ ବହୁତ ଦୂରରେ ସାର୍ ଡନ୍‌କାନ୍ କ୍ୟାମ୍ପବେଲ୍ ଗୋଟିଏ ଛୋଟିଆ ଗୃହରେ ଭୋଜନ କରୁଥିଲେ। ତାଙ୍କ ପାଖରେ ଆଲାନ୍ ଓ ମେଣ୍ଟିଥ୍ ତାଙ୍କୁ ସମ୍ମାନ ଦେଖାଇ ଠିଆହୋଇଥିଲେ। ପ୍ରଥମେ ସେ ଦସ୍ୟୁମାନଙ୍କ ସମ୍ବନ୍ଧରେ କଥାବାର୍ତ୍ତା କରିଥିଲେ। ତା'ପରେ କହିଲେ– ମୁଁ ଭାରି ଦୁଃଖିତ ଯେ ତୁମେ ସମସ୍ତେ ଆର୍ଗାଇଲ୍‌ର ଦଳପତିଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଉଛ। ସେ ତୁମର ପଡ଼ୋଶୀ ଏବଂ ତୁମ୍ଭେମାନେ ଇଚ୍ଛାକଲେ ତୁମର ମଧ୍ୟ ବନ୍ଧୁ ହୋଇପାରିବେ। ଆମ୍ଭେମାନେ ସ୍କଟ୍‌ଲାଣ୍ଡର ଦଳପତି। ରାଜା କିମ୍ବା ତାଙ୍କ ଶତ୍ରୁ ଇଂଲଣ୍ଡରେ କିଏ କ୍ଷମତା ପାଇବ ସେଥିରେ ଆମର ଯାଏଆସେ କ'ଣ ? ଆମେମାନେ

କାହିଁକି ଇଂରେଜଙ୍କ ବିରୁଦ୍ଧରେ ଯୋଗଦେବା ? ତୁମ୍ଭେମାନେ ସମସ୍ତେ ରାଜାଙ୍କ ପାଇଁ ଯୁଦ୍ଧ କରିବାକୁ ଠିକ୍ କରିଛ । ରାଜା ଜିଣିଲେ ତୁମ୍ଭେମାନେ କିପରି ଲାଭବାନ୍ ହେବ ? ଫଳରେ ତୁମ୍ଭେମାନେ କେବଳ ଆର୍ଗାଇଲର ଶତ୍ରୁ ହେବ ।

ଆଲାନ୍ ଉତ୍ତରରେ କହିଲେ—ଏସବୁ କଥା ଆପଣ ଭାଇଙ୍କୁ କହନ୍ତୁ । ଭାଇ ଯାହା କହନ୍ତି ମୁଁ ତାହା ପାଳନ କରେ ।

ମେଣ୍ଟିଥ୍ କହିଲେ—ରାଜାଙ୍କର ଶତ୍ରୁମାନଙ୍କର ଆର୍ଗାଇଲର ଦଳପତି ବନ୍ଧୁ ଥିବାରୁ ଆମ୍ଭେମାନେ ଯୁଦ୍ଧ କରିବାକୁ ଆପଣ ଚାହୁଁନାହାନ୍ତି । ଯଦି ସେ ଜିଣନ୍ତି ତେବେ ସେ ବେଶି କ୍ଷମତାଶାଳୀ ହେବେ । କେବଳ ଏହି କାରଣରୁ ହିଁ ଦଳପତିମାନେ ରାଜାଙ୍କ ପକ୍ଷରେ ଯୁଦ୍ଧ କରିବାକୁ ଇଚ୍ଛା କରନ୍ତି । ମାର୍କୁଇସ ଅଧିକ କ୍ଷମତାସମ୍ପନ୍ନ ହୁଅନ୍ତୁ ଏହା ସେମାନେ ଚାହାଁନ୍ତି ନାହିଁ ।

ଆଲୋଚନା ଯେତେବେଳେ ଘମାଘୋଟ ଚାଲିଥିଲା ସେତେବେଳେ ହଠାତ୍ ଆନଟ୍‌ଲାଇଲ୍ ପ୍ରବେଶ କଲେ । ସେ ଗୋଟିଏ ମୂଲ୍ୟବାନ୍ ଜାମା ପିନ୍ଧି ପୂର୍ବାପେକ୍ଷା ଅଧିକ ସୁନ୍ଦର ଦିଶୁଥିଲେ । ଆଙ୍ଗସ୍‌ଙ୍କ ନିର୍ଦ୍ଦେଶରେ ଗୀତ ଗାଇବାକୁ ଆସିଥିବାର ସେ ଜଣାଇଲେ ।

ଡନ୍‌କାନ୍ ଆଶ୍ଚର୍ଯ୍ୟ ହୋଇ ତାହାକୁ ଚାହିଁରହିଲେ । ସେ ଉଦ୍‌ଗ୍ରୀବ ହୋଇ ଆଲାନ୍‌ଙ୍କୁ ଚୁପ୍ ଚୁପ୍ ପଚାରିଲେ—ଏ ସୁନ୍ଦରୀ ଝିଅଟି କ'ଣ ତୁମ ଘରର ପରିଚାରିକା ? ଆଲାନ୍ ସଙ୍ଗେ ସଙ୍ଗେ ଉତ୍ତର ଦେଲେ—ତାଙ୍କ ପରିବାରର ଜଣେ ନିକଟସମ୍ପର୍କୀୟା ଏବଂ ପାଳିତା କନ୍ୟା ହିସାବରେ ସେ ଏ ଗୃହରେ ବଢ଼ିଛନ୍ତି ।

ସାର୍ ଡନ୍‌କାନ୍ ହୃଦୟର ଉଲ୍ଲାସ ସହ ଆନଟ୍‌କୁ ଚାହିଁ ରହିଲେ । ଏହି ଝିଅଟି ପ୍ରତି ତାଙ୍କ ହୃଦୟରେ ସ୍ନେହ ଉଦ୍ରେକ କାହିଁକି ହେଉଛି ତାହା ସେ ବୁଝିପାରିଲେ ନାହିଁ । ତାଙ୍କ ଚାହାଁଣିରେ ଆନଟ୍ କିଞ୍ଚିତ ବିବ୍ରତ ହେଲେ ଏବଂ ତା'ପରେ ବୀଣାରେ ଏକ ମଧୁର ସଙ୍ଗୀତ ଗାଇଲେ ।

ସଙ୍ଗୀତର ମୂର୍ଚ୍ଛନାରେ ଡନ୍‌କାନ୍ ବିହ୍ୱଳିତ ହୋଇପଡ଼ିଲେ । ତାଙ୍କ

ଚକ୍ଷୁରୁ ଧୀରେ ଧୀରେ କଠୋରତା ଦୂର ହୋଇ ଚକ୍ଷୁଯୁଗଳ ଲୋତକରେ ପୂର୍ଣ୍ଣ ହେଲା । ମସ୍ତକ ଉତ୍ତୋଳନ କରି କିଛି କହିବାକୁ ଯିବା ସମୟରେ ଆଙ୍ଗସ୍ ଦ୍ୱାର ଖୋଲି ଭିତରକୁ ପଶିଲେ । ସେ କହିଲେ—ଆପଣଙ୍କ ସଙ୍ଗେ ଯିବାପାଇଁ ଆମ ଦୂତ ପ୍ରସ୍ତୁତ ହୋଇଛି । ଏହା ସେ ଖୁବ୍ ସଂକୋଚ ଭାବରେ କହିଲେ; କାରଣ ପ୍ରକାରାନ୍ତରେ ସାର୍ ଡନ୍‌କାନ୍‌ଙ୍କୁ ଦୁର୍ଗ ପରିତ୍ୟାଗ କରିବାକୁ ସେ କହିଥିଲେ । କ୍ରୋଧରେ ଅଧୀର ହୋଇ ଡନ୍‌କାନ୍ ଉଠିଲେ । ସେ କହିଲେ— ମୁଁ ଏ ପ୍ରକାର ବ୍ୟବହାର ଆଶା କରି ନଥିଲି । ପାର୍ବତ୍ୟ ପ୍ରଦେଶର ଦଳପତି ତାଙ୍କୁ ଦୁର୍ଗ ତ୍ୟାଗ କରିବାକୁ କହିବେ ଏହା ମୁଁ ଜାଣିନଥିଲି । ଯିବାର ଅବ୍ୟବହିତ ପୂର୍ବରୁ ମୁଁ କହିଯାଉଛି— ଆଉଥରେ ଆସିବାବେଳେ ମୁଁ ଏଠାକୁ ଉନ୍ମୁକ୍ତ କୃପାଣ ହସ୍ତରେ ଆସିବି । ଆଙ୍ଗସ୍ ଅବିଚଳିତ ଭାବରେ କହିଲେ— ଆପଣ ଉପଯୁକ୍ତ ଭାବରେ ଅଭ୍ୟର୍ଥିତ ହେବେ ।

ସାର୍ ଡନ୍‌କାନ୍ ରାଗରେ ଜରଜର ହୋଇ ଅଗଣାକୁ ଚାଲିଲେ । ତା'ପରେ ଅନୁଚରମାନଙ୍କ ସହ ଅଶ୍ୱାରୋହଣ କରି କାପ୍‌ଯେନ୍ ଦାଲ୍‌ଗେଟିଙ୍କ ସଙ୍ଗରେ ଦୁର୍ଗ ପରିତ୍ୟାଗ କଲେ ।

## ଦୂତ ଦାଲ୍‌ଗେଟି

ଦାଲ୍‌ଗେଟିଙ୍କ ଯାତ୍ରା ଦୀର୍ଘ ଓ କ୍ଳାନ୍ତିଜନକ ହୋଇଥିଲା, କାରଣ ସାର୍ ଡନ୍‌କାନ୍ ସିଧାସଳଖ ଗୁପ୍ତପଥ ଛାଡ଼ି ବୁଲାଣି ରାସ୍ତାରେ ଯାଉଥିଲେ । ଦାଲ୍‌ଗେଟି ତାଙ୍କର ଗୁପ୍ତପଥ ଜାଣନ୍ତୁ ଏହା ସେ ଚାହୁଁନଥିଲେ । ତେଣୁ ନିକଟତମ ବନ୍ଦରକୁ ଯାଇ ଗୋଟିଏ ନୌକାରେ ଡନ୍‌କାନ୍ ଦୁର୍ଗ ଅଭିମୁଖେ ଚାଲିଲେ । ତା' ପରଦିନ ସକାଳେ ନୌକାଟି ଯାଇ ଦୁର୍ଗର ପ୍ରାଚୀର ନିକଟରେ ପହଞ୍ଚିଲା । ଦାଲ୍‌ଗେଟି ନୌକାରେ ଠିଆହୋଇ ଦେଖିଲେ ଦୁର୍ଗଟି ସୁଉଚ୍ଚ । ତା'ର ଉଚ୍ଚତା ତା'ର ଗୁରୁତ୍ୱ ଓ ଗାମ୍ଭୀର୍ଯ୍ୟ ପ୍ରତିପାଦିତ କରୁଥିଲା । ସମୁଦ୍ରର ତଟ ଦେଶରେ ସମୁଦ୍ରମୁଖୀ ହୋଇ

ଏକ ପାହାଡ଼ ଉପରେ ଏହା ଅବସ୍ଥିତ ଥିଲା । ଛୋଟ ଛୋଟ ନୌକାରେ ସେମାନେ ଦୁର୍ଗର ଫାଟକ ନିକଟରେ ପହଞ୍ଚିଲେ ।

ଦାଲଗେତି ତାଙ୍କ ଅଶ୍ୱ ଗୁଡ଼ାଭ୍ ନିମିତ୍ତ ବ୍ୟସ୍ତ ହେବାରୁ ଡନ୍‌କାନ୍‌ଙ୍କ ଦୁଇଜଣ ଅନୁଚର ତାଙ୍କୁ ଆଗକୁ ଠେଲି ନେଲେ । ଅନ୍ଧାରୁଆ ଏକ ସିଡ଼ି ପଥରେ ସେ ଦୁର୍ଗ ମଧ୍ୟକୁ ଯାଇଥିଲେ । ପାହାଡ଼ ଦେହରେ ଥିବା ଏହି ପଥରେ ଦୁଇଜଣ ଠିଆ ହେଲେ ଶହଶହ ଶତ୍ରୁସୈନ୍ୟଙ୍କ ମୁକାବିଲା କରିପାରିବେ । ଦୁର୍ଗଟି ସୁଦୃଢ଼ । ଆକ୍ରମଣ ପ୍ରତିହତ ନିମିତ୍ତ ତୋପ ଚତୁର୍ଦ୍ଦିଗରେ ଖଞ୍ଜାଯାଇଥିଲା । ବନ୍ଧୁକ ପାଇଁ ଜଳା-ପଥ ମଧ୍ୟ ଥିଲା ।

ସେମାନେ ଏକ ଦୀର୍ଘ କୋଠରିରେ ପହଞ୍ଚି ପ୍ରାତଃଭୋଜନ ଶେଷକଲେ । ସାର୍ ଡନ୍‌କାନ୍ ନିଜ କୋଠରିକୁ ବିଶ୍ରାମ ନିମିତ୍ତ ଗଲେ । ଦାଲଗେତି ଦୁର୍ଗ ପରିଭ୍ରମଣ ଉଦ୍ଦେଶ୍ୟରେ ଆଗକୁ ଯିବାବେଳେ ଦୁଇଜଣ ସଶସ୍ତ୍ର ପ୍ରହରୀ ତାଙ୍କ ଗତିପଥ ରୋଧ କରି ତାଙ୍କୁ ତାଙ୍କର ନିଜ ବିଶ୍ରାମ କକ୍ଷ ଦେଖାଇଦେଇଥିଲେ । ବାହାରକୁ ଯିବା ନିମିତ୍ତ ତାଙ୍କୁ ଅନୁମତି ଦିଆ ହୋଇନଥିଲା । ତାଙ୍କ ଦ୍ୱାର ସମ୍ମୁଖରେ କୁଠାରହସ୍ତ ଜଣେ ପ୍ରହରୀ ଦିନସାରା ପହରା ଦେଉଥିଲା । ରାତ୍ରିଭୋଜନ ପର୍ଯ୍ୟନ୍ତ ଦାଲଗେତି ତାଙ୍କର ସାଞ୍ଜୁ ଚିକ୍‌କଣ କରୁଥିଲେ । ରାତ୍ରିଭୋଜନ ବିନା ବାକ୍ୟାଳାପରେ ଶେଷ ହେବା ପରେ ଦାଲଗେତି ନିଜ କକ୍ଷକୁ ଯାଇଥିଲେ । ସେଠାରେ ଜଣେ ପରିଚାରକ ତାଙ୍କୁ ଆର୍ଗାଇଲ୍‌ର ମାର୍କୁଇସ୍‌ଙ୍କ ନାମରେ ଏକ ଜଉମୁଦ ପ୍ୟାକେଟ୍ ଦେଇଥିଲା ଏବଂ ତତ୍ପରଦିନ ସକାଳୁ ଇନ୍‌ଭେରାରି ଯିବା ନିମିତ୍ତ କହିଥିଲା । ସେ ପ୍ୟାକେଟ୍‌ଟିରେ ତାଙ୍କର ପରିଚୟପତ୍ର ଓ ଦୁର୍ଗରେ ପ୍ରବେଶପତ୍ର ଥିଲା । ସାର୍ ଡନ୍‌କାନ୍ ତାଙ୍କ ସହ ଯାଇଥିଲେ ପରିଚୟ ଓ ପ୍ରବେଶପତ୍ରର ଆବଶ୍ୟକତା ନଥିଲା । କିନ୍ତୁ ତା' ପରଦିନ ତାଙ୍କ ଜୀବନରେ ସବୁଠାରୁ ଦୁଃଖପୂର୍ଣ୍ଣ ଦିବସର ବାର୍ଷିକୀ ହୋଇଥିବାରୁ ସେ ଯାଇପାରିନଥିଲେ । ସେହିଦିନ ତାଙ୍କ ଦୁର୍ଗ ଦସ୍ୟୁଙ୍କ ଦ୍ୱାରା ଆକ୍ରାନ୍ତ ହୋଇଥିଲା ଓ ତାଙ୍କର ଚାରୋଟି ସନ୍ତାନଙ୍କୁ ନୃଶଂସ ଭାବରେ ହତ୍ୟା କରାଯାଇଥିଲା । ପନ୍ଦରବର୍ଷ ତଳେ ଏ ଘଟଣା ଘଟିଥିଲା ।

ଇନ୍‌ଭେରାରିକୁ କିପରି ଯିବେ ଏହା ଚିନ୍ତାକରି ଦାଲ୍‌ଗେଟି ବସିଥିବାବେଳେ ପ୍ରାର୍ଥନା ସମୟ ସୂଚାଇ ଦୁର୍ଗର ଘଣ୍ଟା ବାଜିଉଠିଥିଲା। ପୁରୁଷ ସ୍ତ୍ରୀ ସମସ୍ତେ କୋଳାହଳ କରି ଗୀର୍ଜା ଅଭିମୁଖରେ ଯିବାର ଦାଲ୍‌ଗେଟି ଶୁଣିଲେ। ସମସ୍ତେ ପ୍ରାର୍ଥନାରତ ଥିବାବେଳେ ଦୁର୍ଗର ଅଭ୍ୟନ୍ତର ବୁଲି ଦେଖିବାପାଇଁ ଦାଲ୍‌ଗେଟି ସ୍ଥିର କଲେ। କିନ୍ତୁ ଯେତେବେଳେ ସେ ଦ୍ୱାର ଖୋଲି ବାହାରକୁ ପାଦ ବାହାର କଲେ, ତାଙ୍କ ପ୍ରହରୀକୁ ଦୂରରୁ ଆସିବା ଦେଖିପାରିଲେ। ସେ ଶୀଘ୍ର ଗୃହ ଭିତରକୁ ଫେରିଲେ ଏବଂ କିଛି କାର୍ଯ୍ୟ ନଥିବାରୁ ଶଯ୍ୟା ଗ୍ରହଣ କଲେ।

ତା' ପରଦିନ ସକାଳେ ପୂର୍ଣ୍ଣ ପ୍ରାତଃଭୋଜନ ପରେ ସେ ତାଙ୍କ ଅଶ୍ୱ ଗୁସ୍ତାଭ୍ ଉପରେ ଚଢ଼ି ଇନ୍‌ଭେରାରିକୁ ବାହାରିଲେ। ତାଙ୍କ ସହିତ ସାତଜଣ ସଶସ୍ତ୍ର ପାର୍ବତ୍ୟ ଅଧିବାସୀ ଗଲେ। କିନ୍ତୁ ସେମାନଙ୍କ ଭିତରୁ ଜଣେହେଲେ ଇଂରାଜୀ କହିପାରୁନଥିଲା। କ୍ୟାପ୍‌ଟେନ୍ ଅଶ୍ୱପୃଷ୍ଠରେ ଏବଂ ତାଙ୍କ ପଥପ୍ରଦର୍ଶକମାନେ ପାଦରେ ଯାଉଥିଲେ। ପଥ ଏପରି ବନ୍ଧୁର ଥିଲା ଯେ ସେମାନେ ପାଦରେ ଚାଲି ମଧ ଅଶ୍ୱଠାରୁ ଦ୍ରୁତଗତିରେ ଯାଉଥିଲେ। ତାଙ୍କ ସଙ୍ଗେ ଯିବା ଦାଲ୍‌ଗେଟିଙ୍କ ପକ୍ଷରେ ଅସମ୍ଭବ ହୋଇପଡୁଥିଲା। ପୁନଶ୍ଚ ସେମାନେ କ୍ୟାପ୍‌ଟେନ୍‌ଙ୍କ ଗତିବିଧି ଉପରେ ଏପରି ଦୃଷ୍ଟି ରଖିଥିଲେ ଯେ ସେ ନିଜକୁ ଏକ ବନ୍ଦୀ ବୋଲି ମନେକରୁଥିଲେ। ଏକ ଝରଣା ଅତିକ୍ରମ କରିବାରେ ଯେତେବେଳେ ଗୁସ୍ତାଭ୍ ବିଳମ୍ବ କଲା, ସେମାନଙ୍କ ମଧରୁ ଜଣେ କ୍ୟାପ୍‌ଟେନ୍‌ଙ୍କ ଆଡ଼କୁ ବନ୍ଧୁକ ଦେଖାଇ ତାଙ୍କୁ ଭୟଭୀତ କରାଇଥିଲା।

ଦାଲ୍‌ଗେଟି ସେମାନଙ୍କ ବ୍ୟବହାରରେ ଅସନ୍ତୁଷ୍ଟ ହେଲେ ମଧ ଏକାକୀ ଅଜଣା ଅଶୁଣା ବନ୍ଧୁର ପାର୍ବତ୍ୟ ରାସ୍ତାରେ ଗତି କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା। ସର୍ବୋପରି ସେମାନଙ୍କ ହସ୍ତରେ ବନ୍ଧୁକ ଥିଲା। ତେଣୁ ସେ ଧୈର୍ଯ୍ୟର ସହ ସେମାନଙ୍କୁ ଅନୁସରଣ କଲେ। ପରିଶେଷରେ ସେମାନେ ଇନ୍‌ଭେରାରିର ଦକ୍ଷିଣ ପାର୍ଶ୍ୱର ହ୍ରଦ ନିକଟରେ ପହଞ୍ଚିଲେ। ପ୍ରହରୀମାନଙ୍କ ମୁଖ୍ୟ ଏକ ଶିଙ୍ଗା ଶବ୍ଦ କରିବାରୁ ଅପରପ୍ରାନ୍ତରୁ ଏକ ନୌକା କ୍ୟାପ୍‌ଟେନ୍ ଗୁସ୍ତାଭ୍ ଓ ପ୍ରହରୀ-

ମାନଙ୍କୁ ନେବାପାଇଁ ଆସିଲା।

ହ୍ରଦର ଚତୁଃପାର୍ଶ୍ୱର ଦୃଶ୍ୟ ଅତି ମନୋହର ଥିଲା। ଘଞ୍ଚ ଅନ୍ଧକାର ବନ ମଧ୍ୟରୁ ଦୁଇଟି ନଦୀ ସେଥିରେ ମିଶିଥିଲେ। ହ୍ରଦର ତୀରଦେଶରେ ଉତ୍ତୁଙ୍ଗ ପର୍ବତ ଉପରେ ଏକ ପୁରାତନ ଦୁର୍ଗ ଦେଖାଯାଉଥିଲା। କିନ୍ତୁ ଦାଲ୍‌ଗେତିଙ୍କୁ ଏ ଦୃଶ୍ୟ ଦେଖିବାକୁ ସମୟ ନଥିଲା। ପ୍ରାତଃଭୋଜନ ପରେ କିଛି ଖାଦ୍ୟ ଗ୍ରହଣ ନ କରିଥିବାରୁ ସେ କ୍ଷୁଧାର୍ତ୍ତ ହୋଇପଡ଼ିଥିଲେ। ସେମାନେ ଇନ୍‌ଭେରାରିରେ ପହଞ୍ଚିଲେ। ଦାଲ୍‌ଗେତି, ଗୁସ୍ତାଭ୍ ଓ ପାର୍ବତ୍ୟ ପ୍ରହରୀଗଣ ନୌକା ଛାଡ଼ି ଆର୍ଗାଇଲ୍‌ର ମାର୍କୁଇସ୍‌ଙ୍କ ଦୁର୍ଗଆଡ଼କୁ ଗତି କରିଥିଲେ। ଇନ୍‌ଭେରାରିରେ ଯାହା ଦେଖିଲେ ସେଥିରେ କ୍ରାପ୍‌ଟେନ୍‌ଙ୍କର ହୃତ୍‌କମ୍ପ ହୋଇଥିଲା। ସହର ବଜାର ରାସ୍ତାରେ ଏକ କାଠ ବୋର୍ଡ଼ରେ ପାଞ୍ଚୋଟି ମୃତଦେହ ଝୁଲାହୋଇଥିଲା। ତା' ତଳେ ଦୁଇ ତିନିଜଣ ସ୍ତ୍ରୀଲୋକ ବସି କାନ୍ଦୁଥିଲେ। କିନ୍ତୁ ସହରବାସୀମାନେ ସେଥିପ୍ରତି ଦୃଷ୍ଟି ନଦେଇ ଦାଲ୍‌ଗେତିଙ୍କୁ ଚାହିଁ ରହିଥିଲେ। ସେଠାରେ ସେ ଜଣେ ସହରବାସୀଙ୍କୁ ଇଂରାଜୀ କହୁଥିବାର ଦେଖି ସେମାନଙ୍କ ମୃତ୍ୟୁଦଣ୍ଡର କାରଣ ପଚାରିଲେ। ଉତ୍ତରରେ ଶୁଣିବାକୁ ପାଇଲେ ଯେ ସେମାନେ ଆର୍ଗାଇଲ୍‌ର ମାର୍କୁଇସ୍‌ଙ୍କୁ ଅବମାନନା କରିଥିଲେ। ସେମାନଙ୍କ ମଧ୍ୟରୁ ତିନିଜଣ ଦସ୍ୟୁ ଓ ଦୁଇଜଣ ଇଂରେଜ।

ଦୁର୍ଗଦ୍ୱାର ନିକଟରେ ଦାଲ୍‌ଗେତି ଏହାଠାରୁ ଅଧିକ ଲୋମ-ହର୍ଷଣକାରୀ ଦୃଶ୍ୟ ଦେଖିଲେ। ତାରଘେରା ଏକ ବିରାଟ ପ୍ରସ୍ତର ଫଳକ ଉପରେ ଏକ କୁଠାର ରଖାଯାଇଥିଲା। ଫଳକ ଓ କୁଠାର ରକ୍ତରଞ୍ଜିତ ହୋଇଥିଲା। ତା' ଉପରେ ଏକ ବାଂଶଦଣ୍ଡ ଉପରେ ଏକ ଛିନ୍ନମସ୍ତକ ରଖାଯାଇଥିଲା। ଏ ଭୀଷଣ ଦୃଶ୍ୟ ଦାଲ୍‌ଗେତିଙ୍କ ମନରେ ଭୀତି ସଞ୍ଚାର କରିଥିଲା। ଏ ଦୃଶ୍ୟାବଳୀ ଓ ଅନୁଚରମାନଙ୍କ ହିଂସ୍ର ଦୃଷ୍ଟିରୁ ମାର୍କୁଇସ୍ ଏକ ନିଷ୍ଠୁର ପ୍ରକୃତିର ଲୋକ ବୋଲି ସେ ଅନୁମାନ କରିନେଲେ ଏବଂ ନିଜର ଭବିଷ୍ୟତ ନିରାପତ୍ତା ବିଷୟରେ ସେ ସନ୍ଦିହାନ ହୋଇଉଠିଥିଲେ।

ଦୁର୍ଗଦ୍ୱାର ନିକଟରେ ସେ ଅଶ୍ୱପୃଷ୍ଠରୁ ଅବତରଣ କଲେ ଏବଂ

ସେଠାରେ ତାହାକୁ ଛାଡ଼ିଯିବାକୁ ବାଧ ହୋଇଥିଲେ। ସଶସ୍ତ୍ର ପ୍ରହରୀପୂର୍ଣ୍ଣ ଏକ କୋଠରିକୁ ତାଙ୍କୁ ନିଆଗଲା। ସେଠାରେ ଅର୍ଦ୍ଧଘଟିକା ପର୍ଯ୍ୟନ୍ତ ଅପେକ୍ଷା କରିବା ପରେ ତାଙ୍କୁ ମାର୍କୁଇସ୍‌ଙ୍କ ନିକଟକୁ ନିଆଗଲା।

ଏକ ପ୍ରଶସ୍ତ କୋଠରିରେ ମାର୍କୁଇସ୍ ବସିଥିଲେ। କୋଠରି ଚାରିପାଖ କାନ୍ଥ ତାଙ୍କ ପୂର୍ବପୁରୁଷଙ୍କ ଚିତ୍ରରେ ପୂର୍ଣ୍ଣଥିଲା। ଗୃହର ଛାତ କାଷ୍ଠରେ ନିର୍ମିତ ଓ ବିଭିନ୍ନ କାରୁକାର୍ଯ୍ୟପୂର୍ଣ୍ଣ ହୋଇଥିଲା। ତାଙ୍କୁ ଚତୁଃପାର୍ଶ୍ୱରେ ସ୍କଟ୍‌ଲାଣ୍ଡର ଭଦ୍ରବ୍ୟକ୍ତିମାନେ ମୂଲ୍ୟବାନ୍ ବସନରେ ଭୂଷିତ ହୋଇ ବସିଥିଲେ। ମାର୍କୁଇସ୍‌ଙ୍କ ଶରୀର ଦୀର୍ଘ ଓ ଋଜୁ ଥିଲା। ତାଙ୍କର ମୁଖ କୃଷ୍ଣବର୍ଣ୍ଣ ଓ ଚକ୍ଷୁରୁ ନିଷ୍ଠୁରତାର ଆଭାସ ମିଳୁଥିଲା।

କ୍ୟାପ୍‌ଟେନ୍ ଦାଲ୍‌ଗେଟି ମାର୍କୁଇସ୍ କିମ୍ବା ତାଙ୍କ ସଭାସଦ୍‌ଙ୍କୁ ଦେଖି ଭୟ କରିନଥିଲେ। ସେ ବହୁ ଯୁଦ୍ଧରେ ଯୋଗଦେଇ ବହୁତ ରାଜା ଓ ଯୁବରାଜଙ୍କ ସମ୍ପର୍କରେ ଆସିଥିଲେ। ଆତ୍ମବିଶ୍ୱାସ ସହ ସେ ମାର୍କୁଇସ୍‌ଙ୍କ ନିକଟକୁ ଗଲେ। କିନ୍ତୁ ମାର୍କୁଇସ୍ ଇସାରାଦ୍ୱାରା ତାଙ୍କୁ ସେଠାରେ ଠିଆହେବାକୁ ନିର୍ଦ୍ଦେଶ ଦେଲେ। କ୍ୟାପ୍‌ଟେନ୍ ଦାଲ୍‌ଗେଟି ଅଭିବାଦନ ଜଣାଇଲେ। ମାର୍କୁଇସ୍ ତାଙ୍କର ପରିଚୟ ଓ ଆଗମନର ଉଦ୍ଦେଶ୍ୟ ପଚାରିଲେ। ଦାଲ୍‌ଗେଟି ନିଜର ପରିଚୟ ଦେଇ କହିଲେ ଯେ ସେ ଶାନ୍ତିର ବାର୍ତ୍ତା ବହନ କରି ମଣ୍ଟ୍‌ରୋଜର ଆର୍ଲଙ୍କ ନିକଟରୁ ଆସିଛନ୍ତି। କିନ୍ତୁ ମାର୍କୁଇସ୍ କହିଲେ– "ମଣ୍ଟ୍‌ରୋଜ ତ ସ୍କଟ୍‌ଲାଣ୍ଡରେ ନଥାନ୍ତି– ସେ ଇଂଲଣ୍ଡରେ ରହନ୍ତି। ତେଣୁ ତାଙ୍କ ନିକଟରୁ ଆସିଛ କହି ମୋତେ ପ୍ରତାରିତ କରିବାକୁ ବୋଧହୁଏ ଚେଷ୍ଟା କରୁଛ ?"

ଦାଲ୍‌ଗେଟି ତନ୍‌କାନ୍ ଦେଇଥିବା ପରିଚୟପତ୍ର ପ୍ରଦାନ କରି କହିଲେ– "ମୁଁ ଗୁଇନ୍ଦା ଦସ୍ୟୁ କିମ୍ବା ଦସ୍ୟୁ ନୁହେଁ। ମୁଁ ମଣ୍ଟ୍‌ରୋଜଙ୍କ ଆଇରିସ୍ ସେନା ବାହିନୀର ମେଜର୍।" ମାର୍କୁଇସ୍ ପରିଚୟପତ୍ର ପଢ଼ି ଟେବୁଲ ଉପରକୁ ଫିଙ୍ଗିଦେଲେ ଏବଂ ପାରିଷଦବର୍ଗଙ୍କୁ କହିଲେ ଯେ ସେ ଶତ୍ରୁପକ୍ଷରୁ ଆସିଛନ୍ତି। ତାଙ୍କ ବିଷୟରେ କ'ଣ କରାଯିବ ଆଲୋଚନା ଚାଲିଲା। କେହି କେହି ପ୍ରସ୍ତାବ ଦେଲେ ଯେ ତାଙ୍କୁ ଫାଶି ଦେବା ଦରକାର। ଦରବାରରେ ଯେପରି କଥାବାର୍ତ୍ତା ଚାଲିଲା ତାହା ଦାଲ୍‌ଗେଟିଙ୍କ

ନିରାପତ୍ତାର ପ୍ରତିକୂଳ ହେଲା । ତେଣୁ ସେ କହିଲେ— "ଶାନ୍ତିର ବାର୍ତ୍ତା ବହନ କରି ମୁଁ ମଣ୍ଟରୋଜର ଆର୍ଲଙ୍କ ନିକଟରୁ ଆସିଛି । ମୋର କ୍ଷତି କଲେ ମଣ୍ଟରୋଜ ତା'ର ପ୍ରତିଶୋଧ ନେବେ । ପୁନରାୟ ଡନ୍‌କାନ୍ ମୋ ନିରାପତ୍ତା ପାଇଁ ପ୍ରତିଶ୍ରୁତି ଦେଇଛନ୍ତି ।"

ଡନ୍‌କାନ୍‌ଙ୍କ ନାମ ଉଚ୍ଚାରଣ କରିବାରେ ମାର୍କୁଇସ୍‌ଙ୍କ ସଙ୍ଗୀମାନେ ଅନୁଚ୍ଚସ୍ୱରରେ କଥାବାର୍ତ୍ତା ଆରମ୍ଭ କଲେ । ଡନ୍‌କାନ୍ ଦାଲ୍‌ଗେଟିଙ୍କୁ ନିରାପତ୍ତାର ପ୍ରତିଶ୍ରୁତି ଦେଇଥିବା କାହାର ବିଶ୍ୱାସ ହେଲାନାହିଁ । ମାର୍କୁଇସ୍ ମଧ୍ୟ ତାଙ୍କ ଚିଠି ପଢ଼ିନଥିଲେ ସେ ଚିଠି ପଢ଼ିବା ପରେ ଦାଲ୍‌ଗେଟିଙ୍କୁ ଡନ୍‌କାନ୍ ଆସିବା ପର୍ଯ୍ୟନ୍ତ କାରାବାସର ଆଦେଶ ଦେଲେ । ଅଯଥାରେ ଡନ୍‌କାନ୍‌ଙ୍କ ଅପ୍ରିୟ ହେବା କେହି ଚାହୁଁ ନଥିଲେ ।

ବିସ୍ମିତ ଦାଲ୍‌ଗେଟିଙ୍କ କଣ୍ଠରୁ କାରାଗାର ଶବ୍ଦ ନିର୍ଗତ ହେବ ସଙ୍ଗେ ସଙ୍ଗେ ମାର୍କୁଇସ୍‌ଙ୍କ ଦୁଇଜଣ ଅନୁଚର ତାଙ୍କୁ ଧରି ନେଇଥିଲେ । ଦାଲ୍‌ଗେଟି ତାଙ୍କଠାରୁ ମୁକ୍ତ ହେବାକୁ ଚେଷ୍ଟା କରିବାରୁ ମାର୍କୁଇସ୍ ରାଗରେ ଅସି ନିଷ୍କାସନ କରିଥିଲେ । କିନ୍ତୁ ଜଣେ ପରିଷଦ ମାର୍କୁଇସ୍ ଓ ଦାଲ୍‌ଗେଟିଙ୍କ ମଝିରେ ଠିଆହୋଇ ଅବସ୍ଥା ସମ୍ଭାଳିନେଲେ । ପ୍ରହରୀମାନେ ଦାଲ୍‌ଗେଟିଙ୍କୁ ନିରସ୍ତ୍ର କରି ଟାଣି ନେଇ ଭୂଗର୍ଭ କାରାଗାରରେ ନିକ୍ଷେପ କଲେ ।

## କାରାଗୃହ

କାରାଗୃହର ପଥ ସଂକୀର୍ଣ୍ଣ ଓ ଅନ୍ଧକାରପୂର୍ଣ୍ଣ ଥିଲା । ଦାଲ୍‌ଗେଟି କାରାଗୃହକୁ ଅବତରଣ କରିବା ସମୟରେ ଦୁଇଥର ଖସିପଡ଼ିଥିଲେ । ଶେଷଥର ପାଦ ଖସିଯିବାରେ ସେ ଗଡ଼ି ଗଡ଼ି ଏକ ନରମ ବସ୍ତୁ ଉପରେ ପଡ଼ିଲେ । ନରମ ବସ୍ତୁଟି ହଲଚଲ୍ ହୋଇ ବିକଳ ଚିତ୍କାର କରିଥିଲା । କ୍ୟାପ୍‌ଟେନ୍ ଉଠିବାକୁ ଚେଷ୍ଟାକରି ପୁଣି ତଳେ ପଡ଼ିଗଲେ । ପଡ଼ିବା ଜାଗାରୁ ଦେଖିଲେ ନରମ ବସ୍ତୁଟି ଏକ ମନୁଷ୍ୟ । ତାହାର

ପରିଚୟ ପଚାରିବାରୁ ସେ କହିଲା– ମାସକ ତଳେ ମୁଁ ଏକ ମନୁଷ୍ୟ ଥିଲି; ବର୍ତ୍ତମାନ ମୁଁ ଏକ କାଠଗଡ଼। ଦାଲ୍‌ଗେଟି ପଢ଼ିବାବେଳେ ତାଙ୍କୁ ସାଞ୍ଜୁର ଶବ୍ଦରୁ ବନ୍ଦୀଟି ତାଙ୍କୁ ଏକ ସୈନିକ ବୋଲି ଧରିନେଇଥିଲା।

ଦାଲ୍‌ଗେଟି ବନ୍ଦୀର ଖାଦ୍ୟ ବିଷୟରେ ପଚାରିଲେ। ସେ ଉତ୍ତର ଦେଲା ଯେ ଦିନକରେ ଥରେ ମାତ୍ର ରୁଟି ଓ ଜଳ ମିଳେ। ତାହାର ଖାଦ୍ୟ ଓ ଜଳ ଗୃହର ଏକ କୋଣରେ ଥୁଆ ହୋଇଥିଲା। ତାହାର ଆଉ ଖାଦ୍ୟ ଦରକାର ନଥିବାରୁ ତାହା ଖାଇବାକୁ ସେ ତାଙ୍କୁ ଅନୁରୋଧ କଲା। କ୍ଷୁଧାର୍ତ୍ତ ଦାଲ୍‌ଗେଟି ତାହା ଖାଇ ଜଳପାନ କଲେ। ସେ ବନ୍ଦୀକୁ ନିଜର ପରିଚୟ ଦେଇ ତାହାର ନାମ ପଚାରିଲେ। ବନ୍ଦୀ ନିଜର ନାମ ରେନାଲ୍‌ଡ଼ ମ୍ୟାକଗ୍ ବୋଲି କହିଲା। ସେ ଦସ୍ୟୁ ଥିଲା। ଦାଲ୍‌ଗେଟି ସେମାନଙ୍କ ବିଷୟ ଆଗରୁ ଜାଣିଥିଲେ ଏବଂ ଆଙ୍ଗସ୍ ଆଲେଙ୍କ ମାମୁଙ୍କୁ ମାରିବା କାରଣ ପଚାରିଲେ। ରେନାଲ୍‌ଡ଼ କହିଲା–ସେମାନେ ଆଗ ଯୁଦ୍ଧ ଆରମ୍ଭ କଲେ। ଆଲେ ଭାଇଦ୍ୱୟ, ସାର୍ ଡନ୍‌କାନ୍ ଏବଂ ଅନ୍ୟମାନେ ତାଙ୍କୁ ଆକ୍ରମଣ କରିଥିଲେ। ଯୁଦ୍ଧରେ ମୋ ଭାଇକୁ ହତ୍ୟା କରାଗଲା। ମୁଁ ଭାଇ ହତ୍ୟାର ପ୍ରତିଶୋଧ ନେବା ପାଇଁ ପ୍ରତିଜ୍ଞା କରିଛି। ଦୁର୍ଭାଗ୍ୟବଶତଃ ମୁଁ ବନ୍ଦୀ। ତା'ପରେ ସେ ଡନ୍‌କାନ୍‌ଙ୍କ ଅବସ୍ଥିତି ବିଷୟରେ ପଚାରିଲା। ସେଠାକୁ ଡନ୍‌କାନ୍ ତା' ପରଦିନ ଆସୁଥିବାର ଦାଲ୍‌ଗେଟି କହିଲେ। ସେ ତାଙ୍କୁ ସେଠାରୁ ମୁକ୍ତ କରିବେ। ରେନାଲ୍‌ଡ଼ କହିଲା– ମୁଁ ଡନ୍‌କାନ୍‌ଙ୍କ ସାହାଯ୍ୟ ଚାହେଁ। ମୁଁ ତାଙ୍କର ଭୀଷଣ ଶତ୍ରୁ ଏବଂ ଅନ୍ତରଙ୍ଗ ବନ୍ଧୁ। ଦାଲ୍‌ଗେଟି ବୁଝିନପାରି ତା' ଆଡ଼କୁ ଚାହାନ୍ତେ ସେ କହିଲା– ପନ୍ଦରବର୍ଷ ତଳେ ମୁଁ ତାଙ୍କ ଦୁର୍ଗ ପୋଡ଼ି ଛାରଖାର କରିଥିଲି ଏବଂ ତାଙ୍କର ଚାରୋଟି ସନ୍ତାନ ହତ୍ୟା କରିଥିଲି। କ୍ୟାପ୍‌ଟେନ୍ ହସି ହସି କହିଲେ– ସେ ତମକୁ ଦେଖିଲେ ସାହାଯ୍ୟ କରିବା ତ ଦୂରର କଥା, ତୁମକୁ ସାଙ୍ଗେ ସାଙ୍ଗେ ହତ୍ୟା କରିବେ।

ରେନାଲ୍‌ଡ଼ କହିବାକୁ ଆରମ୍ଭ କଲା– ଶୁଣ, ''ତାଙ୍କର ଚାରୋଟି ସନ୍ତାନ ମଧ୍ୟରୁ କେବଳ ତିନୋଟିଙ୍କୁ ହତ୍ୟା କରାଯାଇଥିଲା। ଚତୁର୍ଥ-

ସନ୍ତାନଟି ବର୍ତ୍ତମାନ ସୁଦ୍ଧା ବଞ୍ଚିଛି। ଏହି ଗୋଟିଏ ପଦ କଥାରେ ତାଙ୍କର ସମସ୍ତ ଦୁଃଖ ଦୂର ହେବ। ତାଙ୍କର ଚତୁର୍ଥ ସନ୍ତାନଟି କେଉଁଠାରେ ଅଛି ସେ କଥା ମଧ୍ୟ ମୁଁ ଜାଣିଛି। କିନ୍ତୁ ଦାଲ୍‌ଗେଟି ତା' କଥା ଶୁଣିବାପାଇଁ ଆଗ୍ରହ ଦେଖାଉନଥିଲେ।''

ସେ କହିଲେ—ବଜାର ମଧ୍ୟରେ ତିନୋଟି ପାର୍ବତ୍ୟ ଅଧିବାସୀଙ୍କୁ ମାରି ଝୁଲାଇଦିଆଯାଇଛି। ସେମାନେ କ'ଣ ତୁମର ସମ୍ପର୍କୀୟ? ଦୁଃଖ ଓ କ୍ରୋଧପୂର୍ଣ୍ଣ ସ୍ୱରରେ ରେନାଲ୍‌ଡ଼ କହିଲା ସେମାନେ ମୋର ତିନିପୁତ୍ର। ସେମାନଙ୍କର ମୃତ୍ୟୁ ହୋଇଥିବାରୁ ମୋର ମଧ୍ୟ ମୃତ୍ୟୁ ହେବା ଉଚିତ। କିନ୍ତୁ ମୁଁ ବଞ୍ଚିବି। ମୋର କେନେଥ୍ ନାମରେ ଏକ ନାତି ଅଛି— ବଞ୍ଚିରହି ପିତୃହନ୍ତାର ପ୍ରତିଶୋଧ ନେବାପାଇଁ ମୁଁ ତାକୁ ଉପଯୁକ୍ତ ଶିକ୍ଷା ଦେବି। ତା' ନିମିତ୍ତ ସାର୍ ଡନ୍‌କାନ୍‌ଙ୍କୁ ଗୁପ୍ତ କଥା କହି ମୁଁ ମୁକ୍ତି ଲାଭ କରିବି।

ହଠାତ୍ ଅନ୍ଧକାର ମଧ୍ୟରୁ ଏକ ତୃତୀୟ ସ୍ୱର ଶୁଣାଗଲା—''ତୁମେ ଯଦି ମୋତେ ତୁମର ଗୁପ୍ତ କଥା କହିବ, ତେବେ ମୁଁ ତୁମକୁ ସାହାଯ୍ୟ କରିବି।'' ରେନାଲ୍‌ଡ଼ ପାର୍ବତ୍ୟ ଅଧିବାସୀଙ୍କ ପରି ଅନ୍ଧବିଶ୍ୱାସୀ ହୋଇଥିବାରୁ ଭୟରେ ଚିତ୍କାର କରିଉଠିଲା। ଦାଲ୍‌ଗେଟି ତାହାକୁ ଭୂତ ମନେକରି ଭଗବାନ୍‌ଙ୍କ ନାମ ଉଚ୍ଚାରଣ କରିବାରେ ଲାଗିଲା।

''ତୁମ ପ୍ରାର୍ଥନା ବନ୍ଦକର। ମୁଁ ଭୂତ ନୁହେଁ। ମୁଁ ତୁମପରି ଏକ ମନୁଷ୍ୟ। ତୁମେମାନେ ଯଦି ମୋ ଉପଦେଶ ଅନୁସାରେ କାର୍ଯ୍ୟ କରିବ, ତେବେ ମୁଁ ତୁମକୁ ସାହାଯ୍ୟ କରିବି।'' —ଏହା କହି ଆଗନ୍ତୁକ ଦୀପଶିଖାକୁ ନିଜ ଆଡ଼କୁ ଘୁଞ୍ଚାଇ ନେଲେ। ସ୍ୱଚ୍ଛ ଦୀପାଲୋକରେ ସେମାନେ ଏକ ଦୀର୍ଘକାୟ ବ୍ୟକ୍ତି ଦେଖିଲେ। ମାର୍କୁଇସ୍‌ଙ୍କ ଅନୁଚର ପୋଷାକ ସେ ପରିଧାନ କରିଥିଲା।

ବନ୍ଦୀଶାଳାର ଦ୍ୱାର ନଖୋଲି ସେ କିପରି ସେଠାରେ ପହଞ୍ଚିଲା ବୋଲି ଦାଲ୍‌ଗେଟି ପଚାରିବାରୁ ସେ କହିଲା— ତୁମେମାନେ ଯଦି ତୁମର ଗୁପ୍ତ କଥାମାନ କହିବ, ତେବେ ମୁଁ ମଧ୍ୟ ମୋ ଗୁପ୍ତପଥ ଜଣାଇଦେବି। ମୁଁ ତୁମମାନଙ୍କ ପାଇଁ ମଧ୍ୟ କିଛି ଉତ୍ତମ ଖାଦ୍ୟ

ଆଣିଛି କହି ତାହା ତାଙ୍କ ଆଗରେ ଥୋଇଲା । ପାତ୍ରଭରା ପ୍ରଚୁର ମାଂସ ତରକାରୀ ଦାଲ୍‌ଗେଡି ଆଗ୍ରହରେ ଖାଇବାକୁ ଲାଗିଲେ । କିନ୍ତୁ ରେନାଲ୍‌ଡ଼ ତାହାକୁ ସ୍ପର୍ଶ କରିନଥିଲା । ଆଗନ୍ତୁକ ନିଜକୁ ମରଡ଼କ୍ କ୍ୟାମ୍ପବେଲ୍ ଏବଂ ସେ ମାର୍କୁଇସ୍‌ଙ୍କର ଜଣେ ଅନୁଚର ବୋଲି ପରିଚୟ ଦେଲା ।

ଦାଲ୍‌ଗେଡି ତାହାକୁ ରେନାଲ୍‌ଡ଼ର ଗୁପ୍ତକଥା ପଚାରି ବୁଝିବାକୁ କହି ଗୃହର ଏକ କୋଣକୁ ଗଲେ ଏବଂ ସେମାନଙ୍କ କଥା ଶୁଣିବେ ନାହିଁ ବୋଲି କହିଲେ । କିନ୍ତୁ ଆଗନ୍ତୁକ ମରଡ଼କ୍ କ୍ୟାମ୍ପବେଲ୍ ବିଷୟରେ ଜାଣିବାକୁ ତାଙ୍କର କୌତୂହଳ ହେବାରୁ ଖାଇବା ସଙ୍ଗେ ସଙ୍ଗେ କାନପାତି ତାଙ୍କ କଥା ଶୁଣିବାକୁ ଲାଗିଲେ ।

ମରଡ଼କ୍ ରେନାଲ୍‌ଡ଼କୁ କହିଲା— ଦସ୍ୟୁ-ସନ୍ତାନ, ତୁମେ ଜାଣ ତୁମର ଫାଶୀ ହେବ । ରେନାଲ୍‌ଡ଼ କହିଲା— ମୋର ଅତି ଅନ୍ତରଙ୍ଗ ବନ୍ଧୁମାନେ ସମସ୍ତେ ଫାଶୀ ପାଇଛନ୍ତି । ମୋ ପକ୍ଷରେ ଏହା ବା ବଡ଼ କଥା କ'ଣ ହେବ ? ତୁମେ ମୋଠାରୁ କ'ଣ ଚାହଁ ?

—ଦସ୍ୟୁ ତସ୍କରଙ୍କ ବନ୍ଧୁତା ଆମେମାନେ ଚାହୁଁନାହୁଁ । ମୁଁ କେବଳ ଡନ୍‌କାନ୍‌ଙ୍କ କନ୍ୟା କେଉଁଠାରେ ଅଛି ଜାଣିବାକୁ ଚାହେଁ । ତୁମେ ଯଦି ଏହା କହିବ, ତେବେ ମୁଁ ତୁମକୁ ମୁକ୍ତି ଦେବି ।

—ମୁଁ ଯଦି ତୁମକୁ ନକହେ ତୁମେ କ'ଣ ମୋତେ ଦଣ୍ଡ ଦେବ ?

—ନାଁ, ମୁଁ କଥା ଦେଉଛି, ତୁମକୁ ମୁକ୍ତି ଦିଆଯିବ । ରେନାଲ୍‌ଡ଼ କହିଲା— ତେବେ ଶୁଣ । ଡନ୍‌କାନ୍‌ଙ୍କ ତିନୋଟି ପୁତ୍ରକୁ ହତ୍ୟା କରି ତାଙ୍କ ଚତୁର୍ଥ ସନ୍ତାନ କନ୍ୟାଟିକୁ ନେଇ ମୁଁ ତାକୁ ଝିଅ କରି ପାଳିଥିଲି । କିନ୍ତୁ ତା'ପରେ ଆଲାନ୍ ଆଲେ ଓ ତାଙ୍କ ବନ୍ଧୁମାନେ ଆମ ଗ୍ରାମ ଆକ୍ରମଣ କରି ତାକୁ ନେଇଗଲେ । ସେ କନ୍ୟାଟି ବର୍ତ୍ତମାନ ଆଙ୍ଗସ୍ ଆଲେଙ୍କ ପ୍ରାସାଦରେ ଅଛି ଓ ତା'ର ନାମ ଆନଟ୍‌ଲାଇଲ୍ । ତାହାକୁ ମୁଁ ସ୍ୱଚକ୍ଷୁରେ ଦେଖିଛି । ଜଣେ ବୀଣାବାଦକର ଛଦ୍ମବେଶରେ ମୁଁ ଆଲେଙ୍କୁ ମାରିବାକୁ ପ୍ରାସାଦର ସଭାଗୃହରେ ଉପସ୍ଥିତ ଥିଲି । ଯେତେ-

ବେଳେ ମୁଁ ଛୁରା କାଢ଼ି ଆଲାନ୍‌କୁ ମାରିବାକୁ ଉଦ୍ୟତ, ସେତେବେଳେ ଆନଟ୍‌ଲାଇଲ୍ ସେ ଗୃହକୁ ପ୍ରବେଶ କରି ଦସ୍ୟୁମାନଙ୍କର ଏକ ସଙ୍ଗୀତ ଗାଇବାକୁ ଆରମ୍ଭ କରିଥିଲା। ସେ ସଙ୍ଗୀତରେ ମୋର ଚକ୍ଷୁଦ୍ୱୟ ଲୋତକପୂର୍ଣ୍ଣ ହୋଇଗଲା ଏବଂ ମୁଁ ଆଲାନ୍ ଆଲେଙ୍କୁ ମାରିପାରି ନଥିଲି।

—ତୁମେ ଯଦି ପ୍ରକୃତରେ ସତ୍ୟକଥା କହୁଥାଅ, ତେବେ ତୁମେ ତୁମର ପୁରସ୍କାର ପାଇବ। ମୁଁ ବର୍ତ୍ତମାନ ତୁମ ବନ୍ଧୁଙ୍କ ସହ କଥା ହେବି।

ସେମାନଙ୍କ କଥାବାର୍ତ୍ତାର ପ୍ରତ୍ୟେକ ଶବ୍ଦ ଡାଲ୍‌ଗେଟି ଶୁଣୁଥିଲେ। ମାର୍କୁଇସ୍‌ଙ୍କ ଜଣେ ଭୃତ୍ୟ ରେନାଲ୍‌ଡ୍‌ର ଗୁପ୍ତକଥା ଜାଣିବାକୁ କାହିଁକି ଇଚ୍ଛାକଲା ଏବଂ ସେ ମାର୍କୁଇସ୍‌ଙ୍କ ବନ୍ଦୀଙ୍କୁ ମୁକ୍ତ କରିଦେବାକୁ କିପରି ସାହସ କରୁଛି ଏହା ତାକୁ ଦ୍ୱନ୍ଦ୍ୱରେ ପକାଇଥିଲା। ତେଣୁ ସେ ନିଜକୁ ସାବଧାନ କରିନେଇଥିଲେ।

ମରଡ଼କ୍ ଡାଲ୍‌ଗେଟିଙ୍କୁ ଲକ୍ଷ୍ୟ କରି କହିଲା— ତୁମର ମୁକ୍ତି ମଣ୍ଟ୍‌ରୋଜଙ୍କ ସେନାବାହିନୀ ବିଷୟରେ କହିବା ଉପରେ ନିର୍ଭର କରୁଛି। ସେନାବାହିନୀରେ କେତେ ଆଇରିସ୍ ସୈନ୍ୟ ଅଛନ୍ତି? ସେମାନେ କିପରି ପ୍ରସ୍ତୁତ? ତାଙ୍କର ଲକ୍ଷ୍ୟ କ'ଣ?

ଡାଲ୍‌ଗେଟି ପଚାରିଲେ— ତୁମେ ଏହା ଜାଣିବାକୁ କାହିଁକି ଚାହୁଁଛ?

—କେବଳ ଆଗ୍ରହାତିଶଯ୍ୟରୁ ମୁଁ ଏହା ଜାଣିବାକୁ ଇଚ୍ଛା କରୁଛି। ନଚେତ୍ ମାର୍କୁଇସ୍‌ଙ୍କ ଜଣେ ଭୃତ୍ୟ ଏଥିରେ ଆଗ୍ରହ ପ୍ରକାଶ କରିବାରେ କ'ଣ ଥାଇପାରେ?

ଡାଲ୍‌ଗେଟି କହିଲେ— ମଣ୍ଟ୍‌ରୋଜଙ୍କ ସେନାବାହିନୀରେ ଦଶହଜାର ଆଇରିସ୍ ସୈନ୍ୟ ଅଛନ୍ତି।

ଆଗନ୍ତୁକ ରାଗରେ କହିଲା—ମୁଁ ଶୁଣିଛି ଯେ ଆଇରିସ୍ ସୈନ୍ୟଙ୍କ ସଂଖ୍ୟା କେବଳ ଦୁଇହଜାର।

ଡାଲ୍‌ଗେଟି କହିଲେ—ତେବେ ତୁମେ ସେମାନଙ୍କ ବିଷୟରେ ମୋଠାରୁ ଅଧିକ ଜାଣ। ମୁଁ ସେମାନଙ୍କୁ ଦେଖିନାହିଁ।

ଆଗନ୍ତୁକ ପୁନରାୟ ପଚାରିଲା — ଉଚ୍ଚଭୂମି ଅଞ୍ଚଳର କେତେ ସୈନ୍ୟ ମଣ୍ଡ୍‌ରୋଜଙ୍କୁ ସହଯୋଗ କରୁଛନ୍ତି ?

ଡାଲ୍‌ଗେଟି କହିଲେ — ମରଡ଼କ୍ ! ମୁଁ ମଣ୍ଡ୍‌ରୋଜ ସେନାବାହିନୀର ଜଣେ ବେତନପ୍ରାପ୍ତ ସୈନିକ। ମୁଁ କିପରି ତୁମକୁ ସେନାବାହିନୀର ଗୁପ୍ତ କଥା କହିବି ? ସେ ଯଦି ଜାଣନ୍ତି ଯେ ମୁଁ ତୁମକୁ ସମସ୍ତ ଗୁପ୍ତକଥା କହିଛି, ତେବେ ମୋର ଦରମା ମୁଁ କିପରି ପାଇବି ?

ମରଡ଼କ୍ କହିଲେ — ସେଥିପାଇଁ ବ୍ୟସ୍ତ ହେବା ଦରକାର ନାହିଁ। ଯଦି ତୁମେ ସତ୍ୟକଥା ପ୍ରକାଶ କରିବ, ତେବେ ମୋର . . . ମାର୍କୁଇସ୍‌ଙ୍କ ସେନାବାହିନୀରେ ତୁମକୁ କାର୍ଯ୍ୟ ଦିଆଯିବ। ସେ ତୁମକୁ ଦୁଇଗୁଣ ବେତନ ଦେବେ।

— ମାର୍କୁଇସ୍ କ'ଣ ଜଣେ ଦୟାବାନ ବ୍ୟକ୍ତି ?

— ହଁ, ସେ ଜଣେ ସମ୍ମାନସ୍ପଦ ବ୍ୟକ୍ତି।

— କେହି ତାଙ୍କର ପ୍ରଶଂସା କରିବା ତ ମୁଁ ଶୁଣିନାହିଁ। ତୁମେ ନିଶ୍ଚୟ ତାଙ୍କୁ ଭଲଭାବେ ଜାଣ ବା ତୁମେ ନିଜେ ମାର୍କୁଇସ୍ ଅଟ। — ଏହା କହି ଡାଲ୍‌ଗେଟି ହଠାତ୍ ମରଡ଼କ୍ ଉପରକୁ ଝାମ୍ପ ଦେଲେ। ନିଜେ ମାର୍କୁଇସ୍ ହିଁ ଛଦ୍ମବେଶରେ ଆସିଥିଲେ।

ଏହା ଏପରି ଆକସ୍ମିକଭାବେ ଘଟିଲା ଯେ ମାର୍କୁଇସ୍ ଏହାର କିଛି ପ୍ରତିକାର କରିପାରିଲେ ନାହିଁ। କ୍ୟାପ୍‌ଟେନ୍ ତାହାଙ୍କୁ ତଳେ ପକାଇ ଗୋଟିଏ ହାତରେ ଧରିଲେ ଓ ଅନ୍ୟ ହାତରେ ତାଙ୍କ ବେକ ଧରି କହିଲେ — ହେ ଆର୍ଗାଇଲ୍‌ର ରାଜା, ବର୍ତ୍ତମାନ ତୁମେ ମୋର ଆଦେଶ ମାନିବାର ପାଳି ତୁମେ ଯଦି ବନ୍ଦୀଶାଳାରୁ ତୁମର ଗୁପ୍ତଦ୍ୱାର ଦେଖାଇଦେବ, ତୁମକୁ ବଞ୍ଚିବାକୁ ଦେବୁ। ତୁମକୁ ଆମେ ବାନ୍ଧିଦେବୁ। ତୁମ ବନ୍ଦୀଶାଳର ରକ୍ଷକ ଆସିବା ପର୍ଯ୍ୟନ୍ତ ତୁମେ ଏଠାରେ ବନ୍ଦୀ ହୋଇ ରହିବ। ଏହା ପରିବର୍ତ୍ତେ ତୁମେ ଯଦି ସାହାଯ୍ୟ ପାଇଁ ପାଟିକର, ତେବେ ତୁମକୁ ହତ୍ୟା କରାଯିବ।

ମାର୍କୁଇସ୍ କହିଲେ — ମୋତେ ବଞ୍ଚାଅ। ତୁମେ ଯାହା କହିବ ମୁଁ ତାହା କରିବି।

—ଏ ବନ୍ଦୀଶାଳାକୁ ଗୁପ୍ତଦ୍ୱାର କେଉଁଠାରେ ଅଛି ?

—ତୁମେ ଦୀପଟିକୁ ଉପରକୁ ଠେକି ଧରିଲେ ସେ କୋଣରେ ଗୋଟିଏ ଗୁପ୍ତ କିଳିଣୀ ଦେଖିବ।

—ଗୁପ୍ତଦ୍ୱାରଟି କେଉଁଠାରେ ଶେଷ ହୋଇଛି ?

—ମୋର ନିଭୃତ କକ୍ଷର ପରଦା ନିକଟରେ ତାହା ଶେଷ ହୋଇଛି।

—ସେଠାରୁ ମୁଁ କିପରି ଦୁର୍ଗ ଦ୍ୱାରକୁ ଯାଇପାରିବି ?

—ମୋ ଗୃହରୁ ଏକ ପଥ ଗୀର୍ଜା ମଧ୍ୟଦେଇ ଯାଇଛି। କିନ୍ତୁ ତୁମକୁ ତାହା ଖୋଜିବାକୁ ପଡ଼ିବ ନାହିଁ। ମୁଁ ତୁମ ସାଥେ ସାଥେ ଯାଇ ତାହା ଦେଖାଇଦେବି।

କ୍ୟାପ୍ଟେନ୍ କହିଲେ—ତୁମକୁ ଆଉ ବିଶ୍ୱାସ କରାଯିବ ନାହିଁ। ତୁମେ ମୋତେ ଏକ ପାସ୍‌ପୋର୍ଟ ଦେବ। ମୁଁ ତୁମ ନିଭୃତ କକ୍ଷରୁ ପାସ୍‌ପୋର୍ଟ ଫର୍ମ ଏବଂ କଲମ ଆଣୁଛି। ତା'ପରେ କ୍ୟାପ୍ଟେନ୍ ରେନାଲ୍ଡ଼କୁ ମାର୍କୁଇସ୍‌ଙ୍କ ଉପରେ ନଜର ରଖିବାକୁ କହିଲେ। ଯଦି ସେ ସାହାଯ୍ୟ ପାଇଁ ଚିତ୍କାର କରନ୍ତି, ତେବେ ତାଙ୍କୁ ହତ୍ୟା କରିବାକୁ ନିର୍ଦ୍ଦେଶ ଦେଲେ।

ମାର୍କୁଇସ୍‌ଙ୍କୁ ରେନାଲ୍ଡ଼ ଦାୟିତ୍ୱରେ ଛାଡ଼ି ସେ କିଳିଣୀ ଖୋଲିଲେ। ଗୁପ୍ତ ଦ୍ୱାରର ପୃଷ୍ଠଦେଶରେ ଏକ ସଂକୀର୍ଣ୍ଣ ସୋପାନଶ୍ରେଣୀ ଦେଖିଲେ। ତାହା ଅତିକ୍ରମ କରି ସେ ମାର୍କୁଇସ୍‌ଙ୍କ କକ୍ଷରେ ପ୍ରବେଶ କଲେ। କକ୍ଷଟି ଜନଶୂନ୍ୟ ଥିଲା। ସେ ତରତରରେ ଏକ ପାର୍ସପୋର୍ଟ ଫର୍ମ, କଲମ, ମାର୍କୁଇସ୍‌ଙ୍କ ଖଡ୍‌ଗ ଏବଂ ଏକ ଶିଲ୍‌କ ଦଉଡ଼ି ନେଇ କାରାଗୃହକୁ ଫେରିଲେ। ମାର୍କୁଇସ୍ ମୂଲ୍ୟବାନ୍ ପୁରସ୍କାର ଦ୍ୱାରା ରେନାଲ୍ଡ଼କୁ ପ୍ରଲୋଭିତ କରି ମୁକ୍ତି ପ୍ରାର୍ଥନା କରୁଥିବାର ସେ ଶୁଣିଲେ। କିନ୍ତୁ ରେନାଲ୍ଡ଼ ନିଜ ପ୍ରତିଜ୍ଞାରେ ଅଟଳ ଥିଲା।

ଦାଲ୍‌ଗେତି ରେନାଲ୍ଡ଼କୁ ଧନ୍ୟବାଦ ଦେଇ ମାର୍କୁଇସ୍‌ଙ୍କୁ ପାସ୍‌ପୋର୍ଟ ଫର୍ମଟି ଡଗାଲ୍ଡ଼ ଦାଲ୍‌ଗେତି ଏବଂ ତାଙ୍କ ପଥପ୍ରଦର୍ଶକ ନାମରେ ତାହା ପୂରଣ କରିବାକୁ ଆଦେଶ ଦେଲେ। ମାର୍କୁଇସ୍ ଉପାୟହୀନ

ହୋଇ ତାହା ପୂରଣ କଲେ। ଦାଲ୍‌ଗେତି ରେନାଲ୍ଡ଼ର ଜାମା ନେଇ ମାର୍କୁଇସ୍‌ଙ୍କ ମୁଣ୍ଡ ଚାରିପାଖେ ଘେରାଇଦେଲେ ଏବଂ ଶିଲ୍‌କ ଦଉଡ଼ିରେ ଦୃଢ଼ଭାବେ ବନ୍ଧନ କଲେ। ମାର୍କୁଇସ୍‌ଙ୍କ କମରରୁ ଚାବି ନେଇ ରେନାଲ୍ଡ଼ଙ୍କୁ ବନ୍ଧନମୁକ୍ତ କଲେ। ବନ୍ଦୀଶାଳାର ରକ୍ଷୀ ପ୍ରାୟ ତିନିଘଣ୍ଟା ପରେ ଆସିବାର ଖବର ସେ ରେନାଲ୍ଡ଼ଠାରୁ ·ପାଇଥିଲେ। ସେହି ତିନିଘଣ୍ଟା ମାର୍କୁଇସ୍ ବନ୍ଦୀହୋଇ ରହିବେ ଏବଂ ସେମାନେ ପଳାୟନର ସୁବିଧା ପାଇବେ। ରେନାଲ୍ଡ଼ଙ୍କୁ ମାର୍କୁଇସ୍‌ଙ୍କ କୋଟ୍‌ଟି ନେବାକୁ କହି, ଗୁପ୍ତପଥଦେଇ ଦାଲ୍‌ଗେତି ମାର୍କୁଇସ୍‌ଙ୍କ କକ୍ଷରେ ପ୍ରବେଶ କଲେ।

## ପଳାୟନ ଓ ଅନୁଧାବନ

ଗୀର୍ଜାକୁ ଯାଇଥିବା ଗୁପ୍ତପଥର ସନ୍ଧାନ ନେବାକୁ ରେନାଲ୍ଡ଼ଙ୍କୁ କହି ଦାଲ୍‌ଗେତି ମାର୍କୁଇସ୍‌ଙ୍କ କକ୍ଷକୁ ତନ୍ନ ତନ୍ନ କରି ଖୋଜିଥିଲେ। ସେ ମାର୍କୁଇସ୍‌ଙ୍କ ଅତି ଗୁପ୍ତ କାଗଜପତ୍ର ଓ ଏକ ସ୍ୱର୍ଣ୍ଣଥଳି ହସ୍ତଗତ କଲେ। କୋଠରିରେ ଥିବା ଖଡ୍‌ଗ ଓ ପିସ୍ତଲ୍ ମଧ୍ୟ ସାଙ୍ଗରେ ନେଇଗଲେ।

ରେନାଲ୍ଡ଼ ଗୁପ୍ତ ପଥର ସନ୍ଧାନ ପାଇଲା ନାହିଁ। ଖଡ୍‌ଗ ଧରି ଆଗେଇବାକୁ ସେ ପ୍ରସ୍ତୁତ ହୋଇ ଠିଆହେଲା। ଦାଲ୍‌ଗେତି ତାହାକୁ ବୋକାମି ନ କରିବାକୁ କହି ପରଦା ପଶ୍ଚାଦ୍‌ଦେଶ ନିରୀକ୍ଷଣ କରି ଗୁପ୍ତଦ୍ୱାରର ସନ୍ଧାନ ପାଇଲେ। ଗୁପ୍ତ ପଥରେ ଯାଇ ଗୀର୍ଜାରେ ମିଶିଥିବା ଦ୍ୱାରକୁ ଆସ୍ତେ ଆସ୍ତେ ଖୋଲିଲେ। ସେମାନେ ଗୀର୍ଜାରେ ଗ୍ୟାଲେରୀ ଉପରେ ପହଞ୍ଚିଲେ। ଗ୍ୟାଲେରୀର ପରଦା ପଡ଼ିଥିବାରୁ ଉପସ୍ଥିତ ଲୋକମାନେ ତାଙ୍କୁ ଦେଖିପାରି ନଥିଲେ। ଦାଲ୍‌ଗେତି ନିଃଶବ୍ଦରେ ଗ୍ୟାଲେରୀର ରେନାଲ୍ଡ଼ ସହ ପ୍ରବେଶ କଲେ ଏବଂ ଯତ୍ନର ସହ ଦ୍ୱାର ବନ୍ଦ କଲେ।

ଗୀର୍ଜାରେ ଜଣେ ଧର୍ମଯାଜକ ଧର୍ମୋପଦେଶ ଦେଉଥିଲେ। ସେ ଦୀର୍ଘ ସମୟ ଧରି ଉପଦେଶ ଦେଇଥିଲେ। ଦାଲ୍‌ଗେତି ଓ ରେନାଲ୍ଡ଼

ଉପଦେଶ ଶେଷ ପର୍ଯ୍ୟନ୍ତ ବାଧ ହୋଇ ରହିଥିଲେ। ସମୟ ଅତିକ୍ରାନ୍ତ ହେବାରୁ ସେମାନେ ବ୍ୟସ୍ତ ହୋଇପଡ଼ିଲେ। ଧର୍ମଯାଜକ ତାଙ୍କ ଉପଦେଶ ଶେଷ କଲେ। ଗୀର୍ଜାରୁ ଲୋକମାନେ ଚାଲିଗଲେ। ସେ ଧର୍ମଯାଜକ ପଛରେ ରହି ପଦଚାରଣ କରିବାକୁ ଲାଗିଲେ। ଡାଲ୍‌ଗେଟି ଜାଣିଥିଲେ ଯେ ତାଙ୍କ ହାତରେ ସମୟ ଖୁବ୍ କମ୍। କାରାରକ୍ଷକ ମାର୍କୁଇସ୍‌ଙ୍କୁ ଦେଖିବା ପୂର୍ବରୁ ସେମାନେ ଖସି ଚାଲିଯିବା ନିହାତି ଦରକାର। ରେନାଲ୍‌ଡ୍‌କୁ ଅନୁସରଣ କରିବାକୁ କହି ଡାଲ୍‌ଗେଟି ଧର୍ମଯାଜକ ନିକଟକୁ ଯାଇ କହିଲେ— ଆପଣଙ୍କ ଉପଦେଶ ଦେବା ପ୍ରଣାଳୀ ନିମିତ୍ତ ମୁଁ ଆପଣଙ୍କୁ ବଧାଇ ଜଣାଉଛି। ଧର୍ମଯାଜକ କହିଲେ— ମୁଁ ତୁମକୁ ତ ଗୀର୍ଜାରେ ଦେଖିନାହିଁ! ଡାଲ୍‌ଗେଟି କହିଲେ— ମହାମାନ୍ୟ ମାର୍କୁଇସ୍ ଆମକୁ ଗ୍ୟାଲେରୀରେ ବସିବାକୁ ନିର୍ଦ୍ଦେଶ ଦେଇଥିଲେ। ଉଚ୍ଚପଦସ୍ଥ ବ୍ୟକ୍ତିମାନେ ହିଁ କେବଳ ଗ୍ୟାଲେରୀରେ ବସନ୍ତି ଜାଣି ଧର୍ମଯାଜକ ତାଙ୍କୁ ଅଭିବାଦନ ଜଣାଇଲେ। ଡାଲ୍‌ଗେଟି କହିଲେ— ମୁଁ ସମଗ୍ର ପୃଥିବୀ ବୁଲିଛି ଏବଂ ବହୁ ଧର୍ମଯାଜକଙ୍କ ଉପଦେଶ ଶୁଣିଛି; କିନ୍ତୁ ଆପଣ ସମସ୍ତଙ୍କ ମଧ୍ୟରେ ଉପଦେଶ ଦେବା ପ୍ରଣାଳୀରେ ହିଁ ଶ୍ରେଷ୍ଠ। ଧର୍ମଯାଜକ ଆନନ୍ଦରେ ବିଭୋର ହୋଇ ପଚାରିଲେ— ମୁଁ ଆପଣଙ୍କୁ କିଛି ସାହାଯ୍ୟ କରିପାରେ କି? କ୍ୟାପ୍‌ଟେନ୍ କହିଲେ— "ସେପରି କିଛି ନୁହେଁ— କେବଳ ଦୁର୍ଗଦ୍ୱାରକୁ ନିକଟତମ ରାସ୍ତା ଆମକୁ ଦେଖାଇ ଦିଅନ୍ତୁ ଏବଂ ଜଣେ ଭୃତ୍ୟ ମୋର ଅଶ୍ୱ ଗୁସ୍ତାଭ୍‌କୁ ଆଣିବାକୁ ନିର୍ଦ୍ଦେଶ ଦିଅନ୍ତୁ।" ଧର୍ମଯାଜକ ତାଙ୍କୁ ସବୁପ୍ରକାର ସାହାଯ୍ୟ କରି ତାଙ୍କ ସହିତ ଦୁର୍ଗଦ୍ୱାର ପର୍ଯ୍ୟନ୍ତ ଯାଇଥିଲେ। ଡାଲ୍‌ଗେଟି ପ୍ରହରୀମାନଙ୍କୁ ପାସ୍‌ପୋର୍ଟ ଦେଖାଇଲେ ଏବଂ ଧର୍ମଯାଜକ ଗୁସ୍ତାଭକୁ ଆଣିବାକୁ ନିର୍ଦ୍ଦେଶ ଦେଲେ। ପ୍ରହରୀମାନେ ସାଙ୍ଗେ ସାଙ୍ଗେ ତାଙ୍କ କଥା ପାଳନ କଲେ। ମାର୍କୁଇସ୍ ସମୟ ସମୟରେ ଏପ୍ରକାର ଆଶ୍ଚର୍ଯ୍ୟ ନିଷ୍ପତ୍ତି ନେଉଥିବାରୁ ପ୍ରହରୀମାନେ କୌଣସି ସନ୍ଦେହ କରିନଥିଲେ। ସେମାନେ ଭାବିଲେ ଯେ ଡାଲ୍‌ଗେଟି ମାର୍କୁଇସ୍‌ଙ୍କ କୌଣସି ବ୍ୟକ୍ତିଗତ କାର୍ଯ୍ୟରେ ନିଯୁକ୍ତ।

ଡାଲ୍‌ଗେଟି ଗୁସ୍ତାଭ ଉପରେ ଚଢ଼ି ସହର ମଧ୍ୟରେ ଧୀରେ

ଧୀରେ ଗତିକଲେ। ରେନାଲ୍ଡ଼ ତାଙ୍କ ପାର୍ଶ୍ୱରେ ଭୃତ୍ୟରୂପେ ଚାଲିଥିଲା। ବଜାର ଅତିକ୍ରମ କଲାବେଳେ ସେମାନେ ରେନାଲ୍ଡ଼ର ପୁତ୍ରମାନଙ୍କ ମୃତଦେହ ଦେଖିଥିଲେ। ରେନାଲ୍ଡ଼ ଦୁଃଖରେ ଅଧୀର ହୋଇପଡ଼ିଥିଲେ ମଧ୍ୟ ନିଜକୁ ସଂଯତ କରିନେଲା। ରେନାଲ୍ଡ଼ ସେଠାରେ ବସି କାନ୍ଦୁଥିବା ସ୍ତ୍ରୀଲୋକମାନଙ୍କୁ ଚୁପ୍ ଚୁପ୍ କରି କିଛି କହିଲା। ସ୍ତ୍ରୀମାନେ ଆଶ୍ଚର୍ଯ୍ୟରେ ଚାହିଁ ସମ୍ମତିସୂଚକ ମସ୍ତକ ଚାଳନକଲେ। କିନ୍ତୁ କ'ଣ ଘଟିଗଲା ସହରର କୌଣସି ବାସିନ୍ଦା ଜାଣିଲେ ନାହିଁ।

ଅବିଳମ୍ବେ ସେମାନେ ନଗର ଅତିକ୍ରମ କରିଗଲେ। ଦାଲ୍‌ଗେଡି କେଉଁ ଦିଗକୁ ଯିବେ ଜାଣିନଥିଲେ। ସେ ନୌକାରେ ହ୍ରଦ ଅତିକ୍ରମ କରିବାକୁ ସାହସ କଲେ ନାହିଁ। ମାର୍କୁଇସ୍‌ଙ୍କର କ୍ଷିପ୍ର ନୌକା ଥିଲା ଏବଂ ସେମାନେ ଶୀଘ୍ର ଧରାପଡ଼ିଯିବାର ଯଥେଷ୍ଟ ସମ୍ଭାବନା ଥିଲା। ଏହି ସବୁ କଥା ଭାବୁଥିଲାବେଳେ କେଉଁ ଦିଗରେ ଯିବାକୁ ହେବ ରେନାଲ୍ଡ଼ ପଚାରିଲା। ଦାଲ୍‌ଗେଡି କୌଣସି ରାସ୍ତା ଜାଣିନଥିବାର ଜଣାଇ ବ୍ୟସ୍ତ ହୋଇପଡ଼ିଲେ। ସାର୍ ଡନ୍‌କାନ୍ ଆସିବା ପର୍ଯ୍ୟନ୍ତ ଅପେକ୍ଷା ନକରି ଲୁଚି ପଳାଇଆସିବା ଭୁଲ ହେଲାବୋଲି ସେ ମନେକଲେ। ରେନାଲ୍ଡ଼ ତାଙ୍କୁ ଆଶ୍ୱାସନା ଦେଇ କହିଲା— ମୁଁ ପାର୍ବତ୍ୟ ରାସ୍ତା ସହିତ ଘନିଷ୍ଠଭାବେ ପରିଚିତ। ମୁଁ ଯେଉଁ ରାସ୍ତା ଜାଣେ ମାର୍କୁଇସ୍‌ଙ୍କର ରକ୍ତମୁଖା କୁକୁରଗୁଡ଼ିକ ମଧ୍ୟ ସେ ରାସ୍ତା ଜାଣିନାହାନ୍ତି। ତେଣୁ ମୁଁ ଆପଣଙ୍କୁ ବିନା ବାଧାରେ ରାସ୍ତା ଦେଖାଇପାରିବି। ଦାଲ୍‌ଗେଡି ଏକ ପ୍ରକାର ଆଶ୍ୱସ୍ତ ହେଲେ।

ରେନାଲ୍ଡ଼ ଜଙ୍ଗଲ ଭିତରେ ପଥ ଦେଖାଇ ଆଗେ ଆଗେ ଚାଲିଲା। କିନ୍ତୁ ପଥ ଏତେ ବନ୍ଧୁର ଥିଲା ଯେ ଗୁସ୍ତାଭ୍ ତା' ସହିତ ତାଳ ରଖି ଚାଲିପାରିଲା ନାହିଁ। ସେମାନେ ଯେତିକି ଆଗକୁ ଚାଲିଲେ ପଥ ସେତିକି ଦୁର୍ଗମ ବୋଧହେଲା। ଶେଷରେ ପଥଟି ଏକ ଘଞ୍ଚ ବୁଦା ମୂଳରେ ମିଳାଇଗଲା। ଗୁସ୍ତାଭ୍‌କୁ ଆଗକୁ ଚଳାଇବା ଏକପ୍ରକାର ଅସମ୍ଭବ ହୋଇପଡ଼ିଲା। ରେନାଲ୍ଡ଼ ସାଙ୍କେତିକ ଶବ୍ଦ କରିବାରୁ ମଇଳା ପୁରୁଣା ପୋଷାକ ପିନ୍ଧିଥିବା ଏକ ଦୁର୍ବଳ, ବୁଭୁକ୍ଷୁ ବାଳକ ବୁଦା ମଧ୍ୟରୁ

ବାହାରି ସେଠାରେ ପହଞ୍ଚିଲା । ରେନାଲ୍ଡ଼ ତାହାକୁ ଦାଲ୍‌ଗେଟିଙ୍କ ଅଶ୍ୱର ଯତ୍ନ ନେବାକୁ କହି ଆଗେଇ ଚାଲିଲା । ଗୁପ୍ତାଭର ଦାୟିତ୍ୱ ଏକ ପିଲା ଉପରେ ରହିବାରୁ ଦାଲ୍‌ଗେଟି ବ୍ୟସ୍ତ ହୋଇପଡ଼ିଲେ । କିନ୍ତୁ ତାଙ୍କ ଅଶ୍ୱର ଉପଯୁକ୍ତ ବ୍ୟବସ୍ଥାଟି ପିଲାଟି କରିପାରିବ ଏ ନିର୍ଭର ପ୍ରତିଶ୍ରୁତି ରେନାଲ୍ଡ଼ଠାରୁ ପାଇ ଦାଲ୍‌ଗେଟି ତାହାର ଅନୁସରଣ କଲେ । ରେନାଲ୍ଡ଼ ଜୀବନସାରା ପାର୍ବତ୍ୟ ପ୍ରଦେଶର ବଣ ଜଙ୍ଗଲ ମଧ୍ୟରେ ରହିଥିବାରୁ ତା'ର ଚାଲିବାରେ କିଛି ଅସୁବିଧା ହେଲାନାହିଁ । କିନ୍ତୁ ଓଜନଦାର ସାଞ୍ଜୁ ଓ ଜୋତା ପିନ୍ଧି ଦାଲ୍‌ଗେଟି ତା' ସଙ୍ଗେ ଚାଲିପାରିଲେ ନାହିଁ । ସେ ଶୀଘ୍ର ହାଲିଆ ହୋଇ ଗୋଟିଏ ପଥର ଉପରେ ବସିପଡ଼ି ଆଗକୁ ଯିବାର ଅକ୍ଷମତା ପ୍ରକାଶ କଲେ ।

ରେନାଲ୍ଡ଼ ତାହାଙ୍କୁ କିଛି ନ କହି ଇନ୍‌ଭେରାରି ଦିଗରେ ଅଙ୍ଗୁଳି ନିର୍ଦ୍ଦେଶ କଲା । ରେନାଲ୍ଡ଼ ସତର୍କଘଣ୍ଟି ବାଜିବାର ଶବ୍ଦ ଶୁଣି ପାରିଲେ । ରେନାଲ୍ଡ଼ କହିଲା – ସେମାନେ ମାର୍କୁଇସ୍‌ଙ୍କୁ ବନ୍ଦୀଶାଳାରେ ପାଇ ସମସ୍ତ ଜାଣିପାରିଛନ୍ତି । ବର୍ତ୍ତମାନ ସେମାନେ ଆମର ଅନୁସରଣ କରିବେ । ପାର୍ବତ୍ୟ ଅରଣ୍ୟ ପଥ ସହିତ ସେମାନେ ଘନିଷ୍ଠଭାବରେ ପରିଚିତ ହୋଇଥିବାରୁ ଆମକୁ ଖୋଜି ପାଇବା କଷ୍ଟକର ହେବନାହିଁ । ଆମେ ଶୀଘ୍ର ଏଠାରୁ ବାହାରି ନଗଲେ ଧରାପଡ଼ିବା ସୁନିଶ୍ଚିତ । କାଳ ବିଳମ୍ବ ନକରି ଆମେ ଏଠାରେ ପଳାଇଯିବା ଉଚିତ ।

ସେମାନଙ୍କୁ ଦୁର୍ଗମ ବନ୍ଧୁର ପଥଦେଇ ଯିବାକୁ ପଡ଼ୁଥିଲା । ଦାଲ୍‌ଗେଟି ବହୁ କଷ୍ଟରେ ରେନାଲ୍ଡ଼ର ପଛେ ପଛେ ଯାଉଥିଲେ । ହଠାତ୍ ସେମାନେ ମାର୍କୁଇସ୍‌ଙ୍କ ରକ୍ତମୁଖା କୁକୁର ଭୁକିବା ଶବ୍ଦ ଶୁଣିଲେ । ରେନାଲ୍ଡ଼ କହିଲା – ମାର୍କୁଇସ୍‌ଙ୍କ ସୈନ୍ୟମାନେ କୁକୁର ସାହାଯ୍ୟରେ ଆମ ପିଛା ଧରିପାରିଛନ୍ତି । କିନ୍ତୁ ସେମାନେ ଆମକୁ ଧରିପାରିବେ ନାହିଁ । ସେ ଏକ ସାଙ୍କେତିକ ଶବ୍ଦ କଲା । ଗିରିପଥର ଶୀର୍ଷରୁ ତା'ର ପ୍ରତ୍ୟୁତ୍ତର ଆସିଲା । ସେମାନେ ସେହି ଗିରିପଥ ଆରୋହଣ କରୁଥିଲେ । ଶୀଘ୍ର ଯାଇ ସେମାନେ ଗିରିପଥର ଶୀର୍ଷରେ ପହଞ୍ଚିଲେ । ସେଠାରେ ଦଶ ବାରଜଣ ଦସ୍ୟୁ ନିଜର ସ୍ତ୍ରୀପିଲାଙ୍କ ସହ ରହିଥିଲେ । ସେମାନେ

ରେନାଲ୍ଡ଼କୁ ଆନନ୍ଦରେ ସମ୍ବର୍ଦ୍ଧନା ଜଣାଇଲେ । ଦାଲ୍‌ଗେଟିଙ୍କ ସାହାଯ୍ୟରେ ରେନାଲ୍ଡ଼ କିପରି ମୁକ୍ତି ପାଇଲା ତାହା ସେମାନଙ୍କ ଆଗରେ ବର୍ଣ୍ଣନା କଲା । ସେମାନେ ସମସ୍ତେ ଦାଲ୍‌ଗେଟିଙ୍କ ସହ କରମର୍ଦ୍ଦନ କଲେ । ରେନାଲ୍ଡ଼କୁ ଲକ୍ଷ୍ୟକରି ଦାଲ୍‌ଗେଟି କହିଲେ— ମାର୍କୁଇସ୍‌ଙ୍କ ସୈନ୍ୟମାନେ ଆମର ଅନୁସରଣ କରୁଛନ୍ତି । ସେମାନେ ଶୀଘ୍ର ଏଠାରେ ପହଞ୍ଚିବେ । କିନ୍ତୁ ଗିରିପଥ ସଂକୀର୍ଣ୍ଣ ହୋଇଥିବାରୁ ବନ୍ଧୁକ ଓ ଗୁଳି ଥିଲେ ସେମାନଙ୍କର ମୁକାବିଲା ସହଜରେ କରିହୁଅନ୍ତା । ଆମର କୌଣସି ଆଗ୍ନେୟାସ୍ତ୍ର ନଥିବାରୁ ସେମାନଙ୍କର ମୁକାବିଲା କରିହେବ ନାହିଁ । ରେନାଲ୍ଡ଼ ଉତ୍ତରରେ କହିଲା— ଧନୁ ଓ ତୀର ସାହାଯ୍ୟରେ ସେମାନଙ୍କୁ ଅକ୍ଳେଶରେ ହଟାଇ ଦିଆଯିବ । ସେ ସମୟରେ କୌଣସି ଯୁଦ୍ଧରେ ଧନୁ ଓ ତୀର ବ୍ୟବହାର କରାଯାଉନଥିଲା । ତେଣୁ ଦାଲ୍‌ଗେଟି ଅନ୍ୟ ଉପାୟ ନଦେଖି ହସିହସି ଉପସ୍ଥିତ ସୁବିଧାର ସୁଯୋଗ ନେଲେ ।

ରେନାଲ୍ଡ଼ ଦାଲ୍‌ଗେଟିଙ୍କୁ ନୀରବ ରହିବାକୁ ସଙ୍କେତ ଦେଇ ନିମ୍ନକୁ ଲକ୍ଷ୍ୟ କରିବାକୁ କହିଲା । ରକ୍ତମୁଖା କୁକୁର ଓ ସୈନ୍ୟମାନେ ନିକଟତର ହେଉଥିବା ସେମାନେ ଲକ୍ଷ୍ୟକଲେ । ଗିରିପଥର ଠିକ୍ ନିମ୍ନରେ କୁକୁରଗୁଡ଼ିକ ଭୁକିଉଠିଲେ । ଦସ୍ୟୁମାନେ ଓ ଦାଲ୍‌ଗେଟି ନୀରବରେ ସେମାନଙ୍କୁ ଅପେକ୍ଷା କଲେ । ବକ୍ର ଗିରିପଥ ଉପରେ ଚନ୍ଦ୍ର କିରଣ ପଡ଼ିଥିଲା । ନିକଟରେ ଥିବା ବୃକ୍ଷଗୁଡ଼ିକର ଛାୟା ଅନ୍ଧକାର ସୃଷ୍ଟି କରୁଥିଲା । କେବଳ କୁକୁରମାନଙ୍କ ଭୁକିବା ଶବ୍ଦ ବ୍ୟତୀତ ଅନ୍ୟ କିଛି ଶୁଣାଯାଉନଥିଲା । ସୈନ୍ୟମାନେ ମଧ୍ୟ ଗୋଳମାଳ କରିବା ବନ୍ଦ କରିଦେଇଥିଲେ । କିଛି ଗୋଟାଏ ଘଟିବ ଏହି ଆଶଙ୍କାରେ ସମସ୍ତେ ବ୍ୟଗ୍ର ହୋଇ ଅପେକ୍ଷା କଲେ ।

ଶେଷରେ ଏକ ଛାୟାମୂର୍ତ୍ତି ଉପରକୁ ସାବଧାନତା ସହ ଚଢୁଥିବାର ସେମାନେ ଦେଖିଲେ । ସେ ଅର୍ଦ୍ଧପଥରେ ରହି ଅନ୍ୟମାନଙ୍କୁ ତା'ର ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଲା । ଏହି ସମୟରେ ଏକ ଦସ୍ୟୁ ପ୍ରେରିତ ତୀର ତା'ର ବକ୍ଷ ବିଦ୍ଧ କଲା । ସୈନିକଟି ଚିତ୍କାରକରି ଭୂତଳ-ଗାମୀ ହେଲା । ତା'ର ପତନର ଶବ୍ଦ ସହିତ ଅନ୍ୟମାନଙ୍କର ଭୟାତୁର

ଚିତ୍କାର ଓ କ୍ରୋଧୋଦ୍ଦୀପକ ଭାଷା ଶୁଣାଗଲା। ଦସ୍ୟୁମାନେ ବିଜୟ ଉଲ୍ଲାସରେ ଆନନ୍ଦ ଧ୍ୱନି କଲେ। କ୍ୟାପ୍ଟେନ୍ ମଧ ସେମାନଙ୍କ ଆନନ୍ଦରେ ଯୋଗଦେଇ ଚନ୍ଦ୍ରାଲୋକକୁ ଡେଇଁପଡ଼ିଲେ। ଚନ୍ଦ୍ରାଲୋକରେ ତାଙ୍କ ସାଞ୍ଜୁ ଝଲମଲ ଦିଶିଲା। ତକୁ ସୈନ୍ୟମାନେ ତାହା ଲକ୍ଷ୍ୟକରି ତିନୋଟି ଗୁଳି ଚଳାଇଲେ। ଗୋଟିଏ ଗୁଳି ଦାଲ୍‌ଗେଟିଙ୍କ ଗୋଡ଼ରେ ବିଦ୍ଧ ହେବାରୁ ସେ ଭୂମି ଉପରେ ଟଳିପଡ଼ିଲେ। ରେନାଲ୍ଡ଼ କ୍ୟାପ୍ଟେନ୍‌ଙ୍କୁ ଅନ୍ଧକାର ମଧ୍ୟକୁ ନେଇ ସେଠାରେ ଉପସ୍ଥିତ ଥିବା ସ୍ତ୍ରୀଲୋକମାନଙ୍କୁ ତାଙ୍କର ଯତ୍ନ ନେବାକୁ କହିଲା। ବହୁ ରକ୍ତସ୍ରାବ ଫଳରେ କ୍ୟାପ୍ଟେନ୍ ଅଚେତ ହୋଇପଡ଼ିଲେ।

## ମଣ୍ଟ୍ରୋଜଙ୍କ ଯୁଦ୍ଧ ଅଭିଯାନ

ଏ ମଧ୍ୟରେ ମଣ୍ଟ୍ରୋଜ ଓ ଆର୍ଗାଇଲ୍‌ର ମାର୍କୁଇସ୍‌ଙ୍କ ସୈନ୍ୟମାନେ ବିଭିନ୍ନ ଯୁଦ୍ଧକ୍ଷେତ୍ରରେ ପରସ୍ପରର ସମ୍ମୁଖୀନ ହୋଇଥିଲେ। ମଣ୍ଟ୍ରୋଜଙ୍କ ବିରାଟ ସୈନ୍ୟବାହିନୀ ନଥିଲା; କିନ୍ତୁ ତାଙ୍କ ଉଚ୍ଚଭୂମି ଅଞ୍ଚଳର ସୈନ୍ୟମାନେ ଖୁବ୍ ବଳଶାଳୀ ଓ କଷ୍ଟସହିଷ୍ଣୁ ଥିଲେ ଏବଂ ଆଇରିସ୍ ସୈନ୍ୟମାନେ ବିଶେଷ ଅଭିଜ୍ଞ ଥିଲେ। ମାର୍କୁଇସ୍‌ଙ୍କ ସୈନ୍ୟବାହିନୀ ବିଶାଳ ହେଲେ ମଧ ସେମାନଙ୍କ ମଧ୍ୟରୁ ଅଧିକାଂଶ ନିମ୍ନଭୂମି ଅଞ୍ଚଳର ସୈନ୍ୟ ଥିଲେ। ସେମାନଙ୍କର ଯୁଦ୍ଧକ୍ଷେତ୍ରରେ ଅଭିଜ୍ଞତା ବିଶେଷ ନଥିଲା। ତେଣୁ ପ୍ରାୟ ପ୍ରତ୍ୟେକ ଯୁଦ୍ଧ ମଣ୍ଟ୍ରୋଜ ଜିଣୁଥିଲେ।

ଶେଷରେ ମାର୍କୁଇସ୍ ହତୋତ୍ସାହ ହୋଇପଡ଼ିଲେ। ମଣ୍ଟ୍ରୋଜଙ୍କ ସହ ଯୁଦ୍ଧ କରିବା ବାସନା ତାଙ୍କର ସମ୍ପୂର୍ଣ୍ଣରୂପେ ଲୋପ ପାଇଲା। ସେ ଯୁଦ୍ଧକ୍ଷେତ୍ର ପରିତ୍ୟାଗ କରି ସୈନ୍ୟବାହିନୀ ସହ ନିଜର ନଗରୀ ଇନ୍‌ଭେରାରିକୁ ଫେରିଗଲେ। ନିମ୍ନଭୂମି ଅଞ୍ଚଳର ସୈନ୍ୟମାନେ ଯୁଦ୍ଧରେ ପରାଜିତ ହେଲେ। କିନ୍ତୁ ମଣ୍ଟ୍ରୋଜଙ୍କ ସୈନ୍ୟବାହିନୀର ଦଳପତିମାନେ ମାର୍କୁଇସ୍‌ଙ୍କୁ ଘୃଣା କରୁଥିଲା। ତାଙ୍କୁ ଯୁଦ୍ଧରେ ପୂର୍ଣ୍ଣରୂପେ ପରାଜିତ

କରିବାକୁ ଇଚ୍ଛାପ୍ରକାଶ କରି ମଣ୍ଟ୍ରୋଜଙ୍କୁ ଇନ୍‌ଭେରାରି ଆକ୍ରମଣ କରିବାକୁ ପ୍ରବର୍ତ୍ତାଇଲେ। ସେମାନଙ୍କର ଯୁକ୍ତି ଥିଲା– ମାର୍କୁଇସ୍ ବର୍ତ୍ତମାନ ପାଇଁ ନୀରବ ହୋଇପାରନ୍ତି। କିନ୍ତୁ ସୁବିଧା ଦେଖି ସେ କେତେବେଳେ ଆକ୍ରମଣ କରି ପଛରୁ ଛୁରି ମାରିବେ ତାହା କହିହେବ ନାହିଁ।

ମଣ୍ଟ୍ରୋଜ ଦଳପତିମାନଙ୍କ ଯୁକ୍ତି ଗ୍ରହଣ କଲେ। କିନ୍ତୁ ଇନ୍‌ଭେରାରି କିପରି ସଫଳତାର ସହିତ ଆକ୍ରମଣ କରିବେ ତାହା ତାଙ୍କୁ ଜଣା ନଥିଲା। ଆର୍ଗାଇଲ୍‌ର ଯେଉଁ ଭାଗରେ ଇନ୍‌ଭେରାରି ଅବସ୍ଥିତ ତାହା ପର୍ବତସଙ୍କୁଳ ଥିଲା। ତା' ମଧ୍ୟରେ ସୈନ୍ୟଚାଳନ କରିବା ସହଜ ନଥିଲା। କେତେକ ସ୍ଥାନରେ ଗିରିପଥଗୁଡ଼ିକ ଏପରି ସଙ୍କୀର୍ଣ୍ଣ ଥିଲା ଯେ ଅଳ୍ପ କେତେକ ସୈନ୍ୟ ସହସ୍ର ସହସ୍ର ସୈନ୍ୟଙ୍କୁ ଅକ୍ଳେଶରେ ପରାସ୍ତ କରିବାର ସମ୍ଭାବନା ଥିଲା। ଅନ୍ୟ ପକ୍ଷରେ ଶୀତଋତୁ ମାଡ଼ିଆସୁଥିବାରୁ ପର୍ବତ ଶିଖରଗୁଡ଼ିକ ବରଫ ପୂର୍ଣ୍ଣ ହୋଇଆସୁଥିଲା।

ଏସବୁ ଘଟଣାଗୁଡ଼ିକ ମଣ୍ଟ୍ରୋଜଙ୍କୁ ବିବ୍ରତ କରୁଥିଲା। ସେ କ'ଣ କରିବେ ଠିକ୍ କରିପାରୁ ନ ଥିଲେ। ଦିନେ ରାତିରେ ତାଙ୍କ ଛାଉଣୀରେ ସେ ବିଶ୍ରାମ କଲାବେଳେ ଜଣେ ସୈନିକ, ଦୁଇଜଣ ଆଗନ୍ତୁକ ତାଙ୍କୁ ଦେଖାକରିବା ଅଭିପ୍ରାୟରେ ଉପସ୍ଥିତ ଥିବାର ଜଣାଇଲା। ସୈନିକଟି ସେମାନଙ୍କର ପରିଚୟ ଦେଇପାରିଲା ନାହିଁ। ମଣ୍ଟ୍ରୋଜ ତାଙ୍କ ପ୍ରହରୀମାନଙ୍କୁ ସତର୍କ ରହିବାକୁ କହି ଆଗନ୍ତୁକ ଦ୍ୱୟଙ୍କୁ ଆଣିବାକୁ ନିର୍ଦ୍ଦେଶ ଦେଲେ।

ଛାଉଣୀଟି ମଶାଲ ଆଲୋକରେ ଆଲୋକିତ ହୋଇଥିଲା। ଆଗନ୍ତୁକମାନେ ଆସିଲେ। ସେମାନଙ୍କ ମଧ୍ୟରୁ ଜଣେ ଜୀର୍ଣ୍ଣ ପୋଷାକ ପରିହିତ ଉଚ୍ଚଭୂମି ଅଞ୍ଚଳର ଅଧିବାସୀ। ଅନ୍ୟଜଣକ ଦୀର୍ଘକାୟ ଓ ନିମ୍ନଭୂମି ଅଞ୍ଚଳର ଅଧିବାସୀ। ନିମ୍ନଭୂମି ଅଞ୍ଚଳର ଅଧିବାସୀ ଯୁଦ୍ଧରେ ମଣ୍ଟ୍ରୋଜଙ୍କ ବିଜୟ ଯୋଗୁଁ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ। ମଣ୍ଟ୍ରୋଜ ସାବଧାନତା ସହକାରେ ପିସ୍ତଲ ଉପରେ ହାତରଖି ଆଗନ୍ତୁକଙ୍କର ପରିଚୟ ପଚାରିଲେ।

ନିମ୍ନଭୂମି ଅଞ୍ଚଳର ଅଧିବାସୀ କହିଲେ– କେତେ ସପ୍ତାହ ଆଗରୁ

ଆପଣ ଯାହାକୁ ସୈନ୍ୟବାହିନୀରେ ମେଜର୍ ରୂପେ ଗ୍ରହଣ କରିଥିଲେ, ତାକୁ ଚିହ୍ନି ନପାରିବା ଦୁର୍ଭାଗ୍ୟର କଥା । ମଣ୍ଟ୍ରୋଜ ମେଜର୍ ଡାଲ୍‌ଗେଟିଙ୍କୁ ଶିବିରର ସ୍ୱଳ୍ପ ଆଲୋକରେ ଚିହ୍ନି ନପାରିଥିବାରୁ ଅପ୍ରତିଭ ହେଲେ। କିନ୍ତୁ ଏ ମଧ୍ୟରେ ଏତେ ଘଟଣା ଘଟିଯାଇଥିଲା ଯେ ତାଙ୍କ ପକ୍ଷରେ ମେଜର୍‌ଙ୍କୁ ଚିହ୍ନିବା ସମ୍ଭବ ନଥିଲା । ତା'ପରେ ଡାଲ୍‌ଗେଟି ମାର୍କୁଇସ୍‌ଙ୍କ ଦ୍ୱାରା ବନ୍ଦୀ କିମ୍ବା ନିହତ ମନେକରି ସେ ପ୍ରତିଶୋଧ ନେବାପାଇଁ ଆର୍ଗାଇଲ୍ ଅଭିମୁଖେ ସୈନ୍ୟଚାଳନା କରୁଥିବାର କହିଲେ ।

ଡାଲ୍‌ଗେଟି କହିଲେ– "ଆପଣଙ୍କର ଇଚ୍ଛା କାର୍ଯ୍ୟରେ ପରିଣତ ହେଉ । ମାର୍କୁଇସ୍ ପ୍ରକୃତରେ ମୋତେ ବନ୍ଦୀ କରିଥିଲେ । ମୋ ଭାଗ୍ୟବଳରୁ ଓ ଚତୁରତା ଯୋଗୁଁ ମୁଁ ଖସିଆସିଲି। ମୋ ସାଙ୍ଗରେ ଥିବା ଏହି ବ୍ୟକ୍ତି ମଧ୍ୟ ମୋତେ ବିଶେଷ ସାହାଯ୍ୟ କରିଛି।" ମଣ୍ଟ୍ରୋଜ ତାହାକୁ ଯଥାସମୟରେ ପୁରସ୍କୃତ କରିବେ ବୋଲି କହିଲେ। ତା'ର ପରିଚୟ ପଚାରିବାରେ ସେ ତାହା ଜଣାଇବାକୁ ଅସ୍ୱୀକାର କଲା । ଡାଲ୍‌ଗେଟି କହିଲେ– "ସେ ତା' ନାମ ପ୍ରକାଶ କରିବ ନାହିଁ। ସେ ଏକ ଭୟାନକ କାମ କରିଛି ଓ ତା'ର ବହୁତ ଶତ୍ରୁ ଏ ଶିବିରରେ ଅଛନ୍ତି।" ମଣ୍ଟ୍ରୋଜ ତାହା ବୁଝିପାରି ତା'ର ନିରାପତ୍ତାର ପ୍ରତିଶ୍ରୁତି ଦେଲେ ଏବଂ ତାକୁ ବିଶ୍ରାମ ନେବାକୁ କହିଲେ। ମଣ୍ଟ୍ରୋଜଙ୍କ ପ୍ରହରୀମାନେ ତାକୁ ବିଶ୍ରାମସ୍ଥଳକୁ ନେଇଗଲେ ।

ସେ ଯିବା ପରେ ଡାଲ୍‌ଗେଟି ଇନ୍‌ଭେରାରିରେ ଘଟିଥିବା ସମସ୍ତ ଘଟଣା କହିଲେ ଏବଂ ଗୁପ୍ତ କାଗଜପତ୍ରର ବିଡ଼ାଟି ମଣ୍ଟ୍ରୋଜଙ୍କ ହାତକୁ ବଢ଼ାଇଦେଲେ। ମଣ୍ଟ୍ରୋଜ ତାହା ଯତ୍ନର ସହିତ ପଢ଼ିଲେ ଓ ଭାବନାରେ ମଗ୍ନ ହେଲେ। ଡାଲ୍‌ଗେଟି କହିଲେ– "ଆପଣ ଯଦି ଆର୍ଗାଇଲ୍ ଆକ୍ରମଣ କରିବେ, ମୋ ସାଙ୍ଗରେ ଆସିଥିବା ଲୋକଟି ଆପଣଙ୍କୁ ବାଟ ଦେଖାଇଦେବ। ସେ, ତା'ର ସନ୍ତାନ ଓ ବନ୍ଧୁମାନେ ଆର୍ଗାଇଲ୍‌କୁ ଯିବାପାଇଁ ପ୍ରତ୍ୟେକ ଗିରିପଥ ଜାଣନ୍ତି।"

ମଣ୍ଟ୍ରୋଜ ଡାଲ୍‌ଗେଟିଙ୍କୁ ସେ ଲୋକର ସାଧୁତା ବିଷୟରେ ପଚାରିଲେ। ଡାଲ୍‌ଗେଟି କହିଲେ– "ତା'ର ନାମ ରେନାଲ୍‌ଡ୍ ମାକାଗ୍

ଓ ସେ ଏକ ପାର୍ବତ୍ୟ ଦସ୍ୟୁ।'' ମଣ୍ଡ୍ରୋଜ କହିଲେ— ପାର୍ବତ୍ୟ ଦସ୍ୟୁ ହୋଇଥିଲେ ତାଙ୍କର ଓ ଆଲେଙ୍କର ବିବାଦ ସେ ଭଲକରି ଜାଣିଥିବ। ସେଥିପାଇଁ ବିବ୍ରତ ହେବା କଥା। ଯଦି ଆଲାନ୍ ତା'ର ପ୍ରକୃତ ପରିଚୟ ପାଆନ୍ତି, ତେବେ ତାକୁ ନିଶ୍ଚୟ ହତ୍ୟା କରିବେ। ଆଲାନ୍ ସାହସୀ ଓ ତାଙ୍କ ରାଜ୍ୟର ଲୋକଙ୍କର ଅତି ପ୍ରିୟ ବ୍ୟକ୍ତି। ମୁଁ କୌଣସି ପ୍ରକାରେ ତାଙ୍କୁ ଅସନ୍ତୁଷ୍ଟ କରିପାରିବି ନାହିଁ। ଅନ୍ୟପକ୍ଷରେ ଆର୍ଗାଇଲ୍‌ର ବିଜୟ ପାଇଁ ଦସ୍ୟୁ ସନ୍ତାନମାନଙ୍କର ସାହାଯ୍ୟ ଦରକାର। ତେଣୁ ତା'ର ଉପସ୍ଥିତି ଗୁପ୍ତ ରଖିବାକୁ ପଡ଼ିବ। କିନ୍ତୁ ସେ ସାଧୁ ଲୋକ ତ? ତା'ର ଅନୁଚରଙ୍କ ସଂଖ୍ୟା କେତେ ଏବଂ ତା'ର କେତୋଟି ସନ୍ତାନ? ଡାଲ୍‌ଗେଟି ତା'ର ସାଧୁତା ବିଷୟରେ ନିଃସନ୍ଦେହ ଥିଲେ। ଅନୁଚରଙ୍କ ସଂଖ୍ୟା ଆଠଜଣ ବୋଲି କହିଲେ ଏବଂ ତା'ର ପୁତ୍ରମାନେ ଫାଶୀ ପାଇଥିବାର ଜଣାଇଲେ। କେନେଥ୍ ନାମରେ ତା'ର ଏକ ନାତି ଥିବା କଥା ମଧ୍ୟ କହିଲେ। ସେ ପିଲାଟିକୁ ଭୃତ୍ୟଭାବରେ ରଖିବାପାଇଁ ଡାଲ୍‌ଗେଟିଙ୍କୁ ମଣ୍ଡ୍ରୋଜ ଉପଦେଶ ଦେଲେ। ମଣ୍ଡ୍ରୋଜଙ୍କ କଥାବାର୍ତ୍ତା ଓ ବ୍ୟବହାରରେ ଡାଲ୍‌ଗେଟି ଆପ୍ୟାୟିତ ହେଲେ।

## ଯୁଦ୍ଧ

ତା' ପରଦିନ ସକାଳେ ମଣ୍ଡ୍ରୋଜ ରେନାଲ୍ଡ଼କୁ ତାଙ୍କ ଶିବିରକୁ ଡକାଇ ତା'ଠାରୁ ଆର୍ଗାଇଲ୍‌ରେ ପ୍ରବେଶ କରିବାର ପଥ ବିଷୟରେ ସମସ୍ତ କଥା ସଂଗ୍ରହ କରି ଲେଖିରଖିଲେ। ରେନାଲ୍ଡ଼ର ବ୍ୟବହାର ତାଙ୍କୁ ଭଲଲାଗିଲା ଏବଂ ତାକୁ ବିଶ୍ୱାସ କରିବାକୁ ପୂର୍ଣ୍ଣଭାବରେ ନିଷ୍ପତ୍ତି କଲେ। ରେନାଲ୍ଡ଼ ତା'ର ସ୍ୱାଭାବିକ ପୋଷାକ ପିନ୍ଧିଥିଲା ଏବଂ କାଳେ ସେ ଧରାପଡ଼ିଯିବ ଏ ଭୟ ମଣ୍ଡ୍ରୋଜଙ୍କର ଥିଲା। ସେ ତାକୁ ତା'ର ପୋଷାକ ବଦଳାଇବାକୁ କହିଲେ। ତେଣୁ ରେନାଲ୍ଡ଼ ଦୂର ଦ୍ୱୀପର ଲୋକମାନେ ପିନ୍ଧୁଥିବା ପୋଷାକ ବ୍ୟବହାର କଲା।

ଡାଲ୍‌ଗେତି ତା'ପରେ ତାଙ୍କର ପରିଚିତ ବନ୍ଧୁ ଲର୍ଡ଼ ମେଣ୍ଟିଥ୍ ଓ ଆଲେଙ୍କ ସହ ମିଶିଥିଲେ। ସେମାନେ ଡାଲ୍‌ଗେତିଙ୍କୁ ଦେଖି ଖୁସି ହୋଇଥିଲେ ଏବଂ ତାଙ୍କ ପଳାୟନ କାହାଣୀ ଆଗ୍ରହ ସହକାରେ ଶୁଣି-ଥିଲେ। ଡାଲ୍‌ଗେତି ଛଦ୍ମନାମରେ ରେନାଲ୍‌ଡ଼ର ପରିଚୟ ଦେଇ କହିଲେ – ସେ ଜଣେ ଭଲ ବୀଣାବାଦକ ଓ ଭବିଷ୍ୟଦ୍ ବକ୍ତା। ସେ ଏପରି କହୁଥିଲାବେଳେ ଆଲାନ୍ ରେନାଲ୍‌ଡ଼କୁ ନିରୀକ୍ଷଣ କରୁଥିଲେ। କାଳେ ଆଲାନ୍ ରେନାଲ୍‌ଡ଼କୁ ଚିହ୍ନିପାରିବେ ଏହି ଭୟ ତାଙ୍କର ଥିଲା। କିନ୍ତୁ ତାଙ୍କର ଶେଷକଥା ପରେ ଆଲାନ୍ ବନ୍ଧୁଭାବରେ ରେନାଲ୍‌ଡ଼ର କରମର୍ଦ୍ଦନ କଲେ। ଡାଲ୍‌ଗେତି ସନ୍ଦେହମୁକ୍ତ ହୋଇ ଆଙ୍ଗସ୍ ଓ ମେଣ୍ଟିଥ୍‌ଙ୍କ ସହ ମଣ୍ଟ୍‌ରୋଜଙ୍କୁ ଦେଖାକରିବାକୁ ଯାଇଥିଲେ।

ଆଲାନ୍ ରେନାଲ୍‌ଡ଼କୁ ପଚାରିଲେ – ପ୍ରକୃତରେ ତୁମେ କ'ଣ ଭବିଷ୍ୟତ କହିପାରୁଛ? ରେନାଲ୍‌ଡ଼ ସମ୍ମତି ଜଣାଇବାରେ ସେ ପଚାରିଲେ – ମୁଁ ଦୂରଦୃଷ୍ଟିରେ ମେଣ୍ଟିଥ୍‌ଙ୍କର ମୃତ୍ୟୁ ଦେଖିପାରୁଛି। ଜଣେ ଉଚ୍ଚଭୂମି ଅଞ୍ଚଳର ଅଧିବାସୀ ଛୁରାଦ୍ୱାରା ଭୁଷିବାର ମୁଁ ଦେଖି-ପାରୁଛି। କିନ୍ତୁ ଆତତାୟୀର ମୁହଁ ମୁଁ ଦେଖିପାରୁନାହିଁ। ରେନାଲ୍‌ଡ଼ ଉତ୍ତର ଦଲା – ସେ କାମ ତୁମେ ନିଜେ କରିବ। ଆଲାନ୍ କହିଲେ – ଏହା କ'ଣ ସମ୍ଭବ? ଆମ୍ଭେମାନେ ବନ୍ଧୁ। ଏକସଙ୍ଗେ ଆମେ ଯୁଦ୍ଧ କରିଛୁ ଏବଂ ପରସ୍ପରକୁ ଖୁବ୍ ଭଲପାଉଛୁ। ମୁଁ ତାଙ୍କୁ ଛୁରା ମାରିବା ଅସମ୍ଭବ। ରେନାଲ୍‌ଡ଼ କହିଲା – ତୁମେ ନିଶ୍ଚୟ ଛୁରା ମାରିବ। ଅବଶ୍ୟ ତା'ର କାରଣ ଏପର୍ଯ୍ୟନ୍ତ ଜଣାଯାଇନାହିଁ। "ଏହା କଦାପି ହୋଇ-ନପାରେ" – କହି ଆଲାନ୍ ଦ୍ରୁତଗତିରେ ଶିବିରରୁ ବାହାରି ଚାଲିଗଲେ। ଆଲାନ୍‌ର ଗତିପଥକୁ ଚାହିଁ ରେନାଲ୍‌ଡ଼ ସ୍ମିତ ହସ ହସି କହିଲା – ତୁମେ ମୋର ସନ୍ତାନ ଏବଂ ମୋର ଲୋକମାନଙ୍କୁ ମାରିଛ। ଶୀଘ୍ର ତୁମ୍ଭେମାନେ ହିଁ ପରସ୍ପରକୁ ହତ୍ୟା କରିବ।

ମଣ୍ଟ୍‌ରୋଜଙ୍କ ସୈନ୍ୟମାନେ ଆର୍ଗାଇଲ୍ ଅଭିମୁଖେ ଯାତ୍ରା କଲେ। ଆଙ୍ଗସ୍ ଆଲେ ଆନଟ୍‌ଲାଇଲ୍‌କୁ ନିଜ ସାଙ୍ଗରେ ନେଇଥିଲେ। ସେମାନେ ଦୁର୍ଗମ ପାର୍ବତ୍ୟ ପଥରେ ପହଞ୍ଚିଲେ। ପାର୍ବତ୍ୟ ପ୍ରଦେଶରେ ସହଜ

ରାସ୍ତା ନ ଥିଲା। ତୁଷାରପାତରେ ସମସ୍ତେ ଓଦା ହୋଇଗଲେ। ତୁଷାରପାତ ଏପରି ପ୍ରବଳ ହେଲା ଯେ ମଣ୍ଟରୋଜଙ୍କ ସୈନ୍ୟବାହିନୀ ସେଥିରେ ପୋତିହୋଇ ପଡ଼ିବାର ସମ୍ଭାବନା ଦେଖାଗଲା। ମଣ୍ଟରୋଜ ମଧ ଏ ପର୍ବତ ଅତିକ୍ରମ କରିବାକୁ ବୋକାମି ବୋଲି ମନେକଲେ।

କିନ୍ତୁ ଦୁଇଟି ଜିନିଷ ତାଙ୍କୁ ଏ ଦୁର୍ଗମ ପଥରେ ସାହାଯ୍ୟ କରିଥିଲା। ପ୍ରଥମଟି, ମାର୍କୁଇସ୍‌ଙ୍କୁ ପରାସ୍ତ କରି ତାଙ୍କ ରାଜ୍ୟ ଲୁଣ୍ଠନ ପରିକଳ୍ପନା। ଦ୍ୱିତୀୟଟି, ରେନାଲଡ୍‌ ଏବଂ ତା'ର ଅନୁଚରଦ୍ୱୟଙ୍କ ସାହାଯ୍ୟ। ଦସ୍ୟୁ-ସନ୍ତାନତ୍ରୟ ସେମାନଙ୍କୁ ଆର୍ଗାଇଲ୍‌ର ପ୍ରବେଶପଥର ଏକମାତ୍ର ସଂକୀର୍ଣ୍ଣ ବିପଦପୂର୍ଣ୍ଣ ଗିରିପଥରେ ନେଇ ପହଞ୍ଚାଇଲେ। ମଣ୍ଟରୋଜ ଗିରିପଥରେ ବିପଦ ଆଶଙ୍କା କରି ବିଶେଷ ଉଦ୍‌ବିଗ୍ନ ହୋଇପଡ଼ିଲେ। କିନ୍ତୁ ଆର୍ଗାଇଲ୍‌ର ଅଧିବାସୀମାନେ ଏ ଗିରିପଥର ଦୁର୍ଗମତା ବିଷୟରେ ଏପରି ନିଃସନ୍ଦେହ ଥିଲେ ଯେ ସେଠାରେ ବାଧା ଦେବାପାଇଁ କୌଣସି ପ୍ରହରୀ ରଖିନଥିଲେ। ତେଣୁ ବିନା ବାଧାରେ ମଣ୍ଟରୋଜ ଆର୍ଗାଇଲ୍‌ରେ ପ୍ରବେଶ କଲେ।

ମଣ୍ଟରୋଜ ତାଙ୍କ ସୈନ୍ୟଙ୍କୁ ତିନିଭାଗରେ ବିଭକ୍ତ କରି ତିନୋଟି ଦିଗରୁ ଆର୍ଗାଇଲ୍‌ ଆକ୍ରମଣ କଲେ। ସେମାନେ କୌଣସି ପ୍ରକାର ବାଧା ପାଇନଥିଲେ। ମାର୍କୁଇସ୍‌ଙ୍କ ଅନୁଚରମାନେ ପରାସ୍ତ କିମ୍ବା ନିହତ ହେଲେ। ଇନ୍‌ଭେରାରିକୁ ଆକସ୍ମିକ ଭାବରେ ଆକ୍ରମଣ କରାଗଲା। ଯୁଦ୍ଧର ଗଣ୍ଡଗୋଳରେ ମାର୍କୁଇସ୍‌ ଜାହାଜରେ ଏଡ଼ିନ୍‌ବରାକୁ ଖସିପଳାଇଲେ। ମଣ୍ଟରୋଜ ଏବଂ ତାଙ୍କର ଦଳପତିମାନେ ବିଜୟ ଲାଭରେ ବିଶେଷ ଆନନ୍ଦିତ ହେଲେ। କିନ୍ତୁ ତାଙ୍କର କାର୍ଯ୍ୟ ଶେଷ ହୋଇନଥିଲା। ମାର୍କୁଇସ୍‌ ଏଡ଼ିନ୍‌ବରା ଯାଇ ସେଠାରୁ ସୈନ୍ୟ ସଂଗ୍ରହ କରି ପୁନରାୟ ତାଙ୍କ ସଙ୍ଗେ ନିଶ୍ଚିତଭାବେ ଯୁଦ୍ଧ କରିବେ, ଏହା ସେମାନେ ଜାଣିଥିଲେ।

ମାର୍କୁଇସ୍‌ ପ୍ରତିଶୋଧ ନେବା ପାଇଁ ଏଡ଼ିନ୍‌ବରାରେ ସୈନ୍ୟ ସଂଗ୍ରହ କଲେ। ନିମ୍ନଭୂମି ଅଞ୍ଚଳର ଅଧିବାସୀମାନେ ତାଙ୍କୁ ବହୁସଂଖ୍ୟକ ସୈନ୍ୟ ସାହାଯ୍ୟ ଦେଲେ। ମଣ୍ଟରୋଜଙ୍କ ସୈନ୍ୟଦ୍ୱାରା ନିର୍ଯ୍ୟାତିତ

ଆର୍ଗାଇଲ୍‌ର ହଜାର ହଜାର ଲୋକ ସେମାନଙ୍କ ସହ ଯୋଗଦେଲେ। ମାର୍କୁଇସ୍ ଶୀଘ୍ର ଏକ ବିରାଟ ସେନାବାହିନୀ ଗଠନ କରିପାରିଥିଲେ।

ମଣ୍ଟ୍‌ରୋଜ ଏହି ବିପଦ ପ୍ରତି ସମ୍ପୂର୍ଣ୍ଣ ଅବହିତ ଥିଲେ। ତାଙ୍କୁ ଏବଂ ତାଙ୍କ ସୈନ୍ୟଙ୍କୁ ଆର୍ଗାଇଲ୍‌ର ଲୋକମାନେ ଘୃଣା କରୁଥିଲେ। ତିନି ଦିଗରେ ଦୁର୍ଗମ ପାହାଡ଼ ଓ ଚତୁର୍ଥ ଦିଗରେ ସମୁଦ୍ରଦ୍ୱାରା ତାଙ୍କ ପଥ ଅବରୁଦ୍ଧ ହୋଇଥିଲା। ଯଦି ମାର୍କୁଇସ୍ ଆର୍ଗାଇଲ୍‌କୁ ତାଙ୍କ ସେନାଚାଳନା କରନ୍ତି, ତେବେ ମଣ୍ଟ୍‌ରୋଜଙ୍କ ସୈନ୍ୟମାନେ ଜାଲରେ ଛନ୍ଦି ହୋଇଯିବେ। ଅନ୍ୟପକ୍ଷରେ ମାର୍କୁଇସ୍‌ଙ୍କର ସୈନ୍ୟସଂଖ୍ୟା ଖୁବ୍ ବେଶୀ ଥିଲା। ତେଣୁ ସେ ଶୀଘ୍ର ଆର୍ଗାଇଲ୍ ପରିତ୍ୟାଗ କରିଥିଲେ। ମାର୍କୁଇସ୍ ଏଡ଼ିନ୍‌ବରାରୁ ପୂର୍ବଦିଗରୁ ଆସିଥିବା ଜାଣିଥିଲେ। ତେଣୁ ସେ ଉତ୍ତର ଦିଗକୁ ତାଙ୍କର ସୈନ୍ୟ ପରିଚାଳନା କରିଥିଲେ।

ମାର୍କୁଇସ୍ ଏ ଖବର ମଧ ପାଇଲେ। କିନ୍ତୁ ତାଙ୍କର ବିରାଟ ସୈନ୍ୟବାହିନୀଦ୍ୱାରା ଅକ୍ଳେଶରେ ସେ ମଣ୍ଟ୍‌ରୋଜଙ୍କୁ ପରାସ୍ତ କରିବା ଆଶା ରଖି ତାଙ୍କର ପଶ୍ଚାଦ୍‌ଧାବନ କଲେ। କିନ୍ତୁ ମଣ୍ଟ୍‌ରୋଜ ବିଶେଷ ଚତୁର ଥିଲେ। ସେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଏକ ପାର୍ବତ୍ୟ ଦେଶରୁ ଅନ୍ୟ ଏକ ପାର୍ବତ୍ୟ ଦେଶକୁ ଏପରି କ୍ଷିପ୍ରଗତିରେ ସୈନ୍ୟ ଚାଳନା କରୁଥିଲେ ଯେ ମାର୍କୁଇସ୍‌ଙ୍କ ପକ୍ଷରେ ତାଙ୍କର ଅନୁସରଣ କରିବା କଷ୍ଟକର ହୋଇଥିଲା।

ଶୁକ୍ଳପକ୍ଷର ଏକ ରଜନୀରେ ମଣ୍ଟ୍‌ରୋଜ ଦିନସାରା ଚାଲି ଚାଲି କ୍ଳାନ୍ତ ହୋଇ ତାଙ୍କ ଶିବିରରେ ବିଶ୍ରାମ ନେଉଥିଲେ। ସେ ପ୍ରାୟ ଦୁଇଘଣ୍ଟା ବିଶ୍ରାମ ନେବା ପରେ ଜଣେ କେହି ତାଙ୍କ ବାହୁ ସ୍ପର୍ଶ କଲେ। ମଣ୍ଟ୍‌ରୋଜ ଉଠି ତାଙ୍କ ସେନାବାହିନୀର ଜଣେ ଦଳପତିଙ୍କୁ ଦେଖିଲେ। ମାର୍କୁଇସ୍ ତିନିହଜାର ବଛା ବଛା ସୈନ୍ୟ ସହ ନିକଟରେ ଶିବିର ସ୍ଥାପନ କରିଥିବାର ଖବର ସେ ଦେଲେ ଏବଂ ତାଙ୍କର କେବଳ ଏକ ହଜାର ସୈନ୍ୟ ଥିବାର କହିଲେ। ଏକ ହଜାର ସୈନ୍ୟ ସହ ମାର୍କୁଇସ୍‌ଙ୍କ ସେନାକୁ ସମ୍ମୁଖୀନ ହେବାର ସମ୍ଭାବନା ମଣ୍ଟ୍‌ରୋଜ ଦେଖିପାରୁ ନଥିଲେ। ଦଳପତି ତାଙ୍କୁ ଆଶ୍ୱାସନା ଦେଇ

କହିଲେ – ନିକଟବର୍ତ୍ତୀ ଗ୍ରାମମାନଙ୍କରେ ଲୋକମାନେ ମାର୍କୁଇସ୍‌ଙ୍କୁ ଘୃଣା କରୁଥିବାରୁ ଯୁଦ୍ଧଭେରୀ ବାଜିବା ସଙ୍ଗେ ସଙ୍ଗେ ଆମ୍ଭମାନଙ୍କ ସହ ସେମାନେ ଯୋଗଦେବେ ।

ମଣ୍ଟ୍‌ରୋଜ କହିଲେ – ଦିନେ ନା ଦିନେ ଆମକୁ ମାର୍କୁଇସ୍‌ଙ୍କ ସେନାବାହିନୀ ସହ ଯୁଦ୍ଧ କରିବାକୁ ପଡ଼ିବ। ତେଣୁ ସେ ଯୁଦ୍ଧ ବର୍ତ୍ତମାନ ହେଉ। ଅନ୍ୟ ଦଳପତି ଏବଂ ସେନାନାୟକମାନଙ୍କୁ ଆସିବାକୁ ଖବର ଦିଅ। ତୁମେ ହିଁ ମାର୍କୁଇସ୍‌ଙ୍କ ସୈନ୍ୟମାନଙ୍କୁ ଭେଟିବା ନିମିତ୍ତ ପଥ ଦେଖାଅ।

ହଠାତ୍ ନୀରବ ନିଃଶବ୍ଦ ଶିବିର ମୁଖରିତ ହୋଇଉଠିଲା। ଦଳପତିମାନେ ବିଭିନ୍ନ ଶିବିରରୁ ଆସି ମଣ୍ଟ୍‌ରୋଜଙ୍କ ଶିବିରରେ ଜମାହେଲେ। ମନ୍ତ୍ରଣା ଚାଲିଲା। ସମସ୍ତେ ଶୀଘ୍ର ମାର୍କୁଇସ୍‌ଙ୍କୁ ଆକ୍ରମଣ କରିବାକୁ ମତ ପ୍ରକାଶ କଲେ। ଅନତିବିଳମ୍ବେ ସେମାନେ ମାର୍କୁଇସ୍‌ଙ୍କ ସେନାବାହିନୀ ଦିଗରେ ଯାତ୍ରା ଆରମ୍ଭ କଲେ। ନିକଟବର୍ତ୍ତୀ ଗ୍ରାମମାନଙ୍କୁ ମଧ ଖବର ଦିଆଗଲା। ଗ୍ରାମମାନଙ୍କରୁ ଅସ୍ତ୍ର ଧରିପାରୁଥିବା ପ୍ରତ୍ୟେକ ବ୍ୟକ୍ତି ତାଙ୍କ ସହିତ ଯାତ୍ରାକଲେ। ତେଣୁ ସେମାନଙ୍କର ସଂଖ୍ୟା ଆଉ ଏକ ଚତୁର୍ଥାଂଶ ବଢ଼ିଗଲା।

ମଣ୍ଟ୍‌ରୋଜଙ୍କ ସୈନ୍ୟଚାଳନା ଖବର ମାର୍କୁଇସ୍‌ଙ୍କ ନିକଟରେ ପହଞ୍ଚିଲା। କିନ୍ତୁ ସେ ସେଥିପାଇଁ ବିବ୍ରତ ହେଲେ ନାହିଁ। ମଣ୍ଟ୍‌ରୋଜ ତାଙ୍କର ସ୍ୱଳ୍ପ ସୈନ୍ୟ ସହ ତାଙ୍କୁ ଆକ୍ରମଣ କରିବେ, ଏହା ତାଙ୍କର ବିଶ୍ୱାସ ହେଲା ନାହିଁ। ସେ ଏହାକୁ ଏକ କୌଶଳ ବୋଲି ମନେକଲେ। ସେ ଡନ୍‌କାନ୍ କ୍ୟାମ୍ପବେଲଙ୍କୁ କହିଲେ – ସେମାନେ ଆମକୁ ଆକ୍ରମଣ କରି ବିପଦ ବରଣ କରିବେ ନାହିଁ। ମଣ୍ଟ୍‌ରୋଜ ଭଲଭାବରେ ଜାଣନ୍ତି ଯେ ତାଙ୍କ ସ୍ୱଳ୍ପ ସୈନ୍ୟ ସହ ଆକ୍ରମଣ କଲେ ରାଜାଙ୍କ ସୈନ୍ୟ ସହ ସେ ସମୂଳେ ମୂଳପୋଛ ହେବେ। ରାଜାଙ୍କର କୌଣସି ସେନାପତି ମଧ ରହିବେ ନାହିଁ। ତେଣୁ ଏ ପ୍ରକାର ବୋକାମି ସେ ଆଦୌ କରିବେ ନାହିଁ।

କିନ୍ତୁ ରାତ୍ରିରେ କାଳେ ଆକ୍ରମଣ ହୋଇପାରେ ସେଥିପାଇଁ ମାର୍କୁଇସ୍

ନିଜ ସୈନ୍ୟମାନଙ୍କୁ ପ୍ରସ୍ତୁତ ରହିବାକୁ କହିଲେ। ତାଙ୍କର ଅନୁଚରମାନେ ମଣ୍ଟ୍ରୋଜଙ୍କ ସୈନ୍ୟମାନଙ୍କଦ୍ୱାରା ପାଇଥିବା ପରାଭବର ପ୍ରତିଶୋଧ ନେବାପାଇଁ ବ୍ୟଗ୍ର ହୋଇ ଅପେକ୍ଷା କଲେ। କୌଣସି ପ୍ରକାର ଘଟଣା ନ ଘଟି ରାତ୍ରି ଶେଷ ହେଲା। ପୂର୍ବାକାଶରେ ସୂର୍ଯ୍ୟ ଧୀରେ ଧୀରେ ଉଠିଲେ। ମାର୍କୁଇସ୍‌ଙ୍କର ସୈନ୍ୟମାନେ ଦୁଇଧାଡ଼ିରେ ସଜ୍ଜିତ ହୋଇ ଶତ୍ରୁର ଆକ୍ରମଣ ଅପେକ୍ଷାରେ ରହିଲେ। ଦୂରରେ ମଣ୍ଟ୍ରୋଜଙ୍କ ବିଭିନ୍ନ ସୈନ୍ୟଦଳଦ୍ୱାରା ବ୍ୟାଗ୍‌ପାଇପ୍ ବାଜିବାର ଶୁଣାଗଲା।

ମାର୍କୁଇସ୍ ହସି ହସି କହିଲେ, "ମଣ୍ଟ୍ରୋଜ ଆସୁନାହାନ୍ତି। ସେ ନିଶ୍ଚିତଭାବରେ ଆସିବେ ନାହିଁ। କେବଳ ସ୍ଥାନୀୟ ବାସିନ୍ଦାମାନେ ଆମକୁ ଉତ୍ୟକ୍ତ କରିବାକୁ ଆସିଛନ୍ତି।" ଏହି ସମୟରେ ରାଜାଙ୍କ ସୈନ୍ୟମାନଙ୍କର ତୂର୍ଯ୍ୟନାଦ ହେଲା। ଡନ୍‌କାନ୍ କ୍ୟାମ୍ପ୍‌ବେଲ କହିଲେ– "ମଣ୍ଟ୍ରୋଜ ତାଙ୍କ ସୈନ୍ୟଙ୍କ ସହ ପହଞ୍ଚିଲେଣି। ବୋଧହୁଏ ଘୋଡ଼ାସବାର ସୈନ୍ୟ ତାଙ୍କ ସହ ଅଛନ୍ତି। କିନ୍ତୁ ସେ ଆମକୁ ଭୟଭୀତ କରାଇପାରିବେ ନାହିଁ। ଆମର ସୈନ୍ୟମାନେ ପ୍ରତିଶୋଧ ନେବାପାଇଁ ବ୍ୟାକୁଳ।"

ମାର୍କୁଇସ୍ ନୀରବଭାବେ ଠିଆହୋଇଥିଲେ। ଏହି ଯୁଦ୍ଧଯାତ୍ରା ମଧ୍ୟରେ ଘୋଡ଼ାରୁ ପଡ଼ି ତାଙ୍କର ଗୋଟିଏ ହାତ ଭାଙ୍ଗିଯାଇଥିଲା। ତାହାକୁ ବ୍ୟାଣ୍ଡେଜ୍ କରି ଝୁଲାଇ ରଖାଯାଇଥିଲା। ତେଣୁ ସେପରି ଅବସ୍ଥାରେ ସେ ଯୁଦ୍ଧ କରିପାରିବେ ନାହିଁ ଭାବି ଦୁଃଖିତ ଭାବରେ ସେ ହାତକୁ ଚାହିଁରହିଲେ। ଡନ୍‌କାନ୍ କହିଲେ– "ତୁମେ ଯୁଦ୍ଧ କରିପାରିବ ନାହିଁ। ତେଣୁ ତୁମେ ଯୁଦ୍ଧଭୂମିରୁ ଘୁଞ୍ଚିଯାଇ ନୌକାରେ ଅପେକ୍ଷା କରିବା ଭଲ ହେବ। ତୁମେ ଆମର ମୁଖ୍ୟ। ତେଣୁ ତୁମର ଜୀବନ ମୂଲ୍ୟବାନ୍।" ମାର୍କୁଇସ୍ ଗର୍ବର ସହ କହିଲେ– ମୁଁ ମଣ୍ଟରୋଜଙ୍କୁ ଡରି ଯୁଦ୍ଧଭୂମି ଛାଡ଼ି ଚାଲିଯିବି ନାହିଁ। ମୁଁ ଯୁଦ୍ଧ ନକରି ପାରିଲେ ମଧ୍ୟ ମୋ ସୈନ୍ୟମାନଙ୍କ ସହ ମୁଁ ଯୁଦ୍ଧଭୂମିରେ ମରିପାରିବି। କିନ୍ତୁ ଅନ୍ୟ ଦଳପତିମାନେ ଏକ ସ୍ୱରରେ ଯୁଦ୍ଧଭୂମିରୁ ଅପସରି ଯିବାପାଇଁ ତାଙ୍କୁ ଅନୁରୋଧ କଲେ। ସାର୍ ଡନ୍‌କାନ୍ ତାଙ୍କର ନେତୃତ୍ୱ ନେବେ। ମାର୍କୁଇସ୍

ତାଙ୍କ ଜୀବନକୁ ବିପନ୍ନ କରିବା ଠିକ୍ ହେବ ନାହିଁ। ମାର୍କୁଇସ୍ ଭୀରୁ ନଥିଲେ ଏବଂ ପ୍ରାଣଭୟରେ ପଳାଇଯିବା ପାଇଁ ସେ ଚାହୁଁ ନଥିଲେ। ଯେତେବେଳେ ସମସ୍ତେ ତାଙ୍କୁ ଯୁଦ୍ଧଭୂମି ଛାଡ଼ି ଚାଲିଯିବା ପାଇଁ ଅନୁରୋଧ କଲେ, ସେ ଅନିଚ୍ଛା ସହକାରେ ଯୁଦ୍ଧଭୂମିରୁ ଯାଇ ନୌକାରେ ଅପେକ୍ଷା କଲେ।

ସାର୍ ଡନ୍‌କାନ୍ ତାଙ୍କର ମୁଖ୍ୟ ଯୁଦ୍ଧରୁ ଅବସର ନେବାରୁ ଗଭୀରଭାବେ ଦୁଃଖିତ ହେଲେ। ସେ ନିଜକୁ କହିଲେ, "ଏହାଦ୍ୱାରା ସେ ନିରାପଦରେ ରହିବେ। କିନ୍ତୁ ତାଙ୍କର ପୂର୍ବପୁରୁଷ କେହି ଯୁଦ୍ଧଭୂମିରୁ ଏପରିଭାବେ ଯାଇନଥିଲେ। ସମସ୍ତ ସୈନିକ ତାଙ୍କୁ ଯୁଦ୍ଧଭୂମିରୁ ଯିବା ଦେଖିଛନ୍ତି ଏବଂ ସମସ୍ତେ ନିଶ୍ଚୟ ନିରୁତ୍ସାହିତ ହେବେ।" ହଠାତ୍ ଭୀଷଣ କୋଳାହଳ ଶବ୍ଦ ଶୁଣି ସେ ତାଙ୍କ ସୈନ୍ୟଦଳର ସମ୍ମୁଖଭାଗକୁ ଚାଲିଗଲେ। ଶତ୍ରୁମାନେ ମାର୍କୁଇସ୍ ଅପସରି ଯିବା ଦେଖି କ୍ରୋଧ ଓ ବିଜୟରେ ଉନ୍ମତ୍ତ ହୋଇ କୋଳାହଳ କରୁଥିଲେ। ମଣ୍ଟ୍‌ରୋଜ କହିଲେ – ସେମାନେ ତାଙ୍କର ସେନାମୁଖ୍ୟଙ୍କ ଜୀବନ ରକ୍ଷା କରିଛନ୍ତି। ବର୍ତ୍ତମାନ ଆକ୍ରମଣ କରିବା ସମୟ। ଉପସ୍ଥିତ ସେନାବାହିନୀମାନଙ୍କର ଦଳପତିମାନେ ବର୍ତ୍ତମାନ ଆକ୍ରମଣ କରନ୍ତୁ।

## ବିଜୟ

ଯୁଦ୍ଧଭେରୀ ଆକ୍ରମଣର ସୂଚନା ଦେଲା। ମଣ୍ଟ୍‌ରୋଜଙ୍କ ସୈନ୍ୟମାନଙ୍କର କୋଳାହଳ ବଢ଼ିଗଲା ଏବଂ ପର୍ବତ କନ୍ଦରରେ ସେ କୋଳାହଳର ପ୍ରତିଧ୍ୱନୀ ଶୁଣାଗଲା। ମଣ୍ଟ୍‌ରୋଜ, ତାଙ୍କ ଆଇରିସ୍ ସୈନ୍ୟ ଏବଂ ମେଜର୍ ଦାଲ୍‌ଗେଟିଙ୍କ ସହ ପୃଷ୍ଠଭାଗରେ ରହିଲେ। ମେଣ୍ଟିଥ୍‌ଙ୍କ ନେତୃତ୍ୱରେ ଉଚ୍ଚଭୂମିର ସୈନ୍ୟ ଓ ଦଳପତିମାନେ ଶତ୍ରୁମାନଙ୍କ ଉପରେ ଗୁଳି ଓ ଶର ନିକ୍ଷେପ କଲେ। ମାର୍କୁଇସ୍‌ଙ୍କ ସୈନ୍ୟମାନେ ଶକ୍ତିଶାଳୀ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲେ ଏବଂ ଗୋଟିଏ ଜାଗାରେ

ରହିବାଦ୍ୱାରା ଉତ୍ତମ ଅସ୍ତ୍ରଚାଳନା କରିପାରୁଥିଲେ। ତେଣୁ ମଣ୍ଟରୋଜଙ୍କ ସେନାବାହିନୀର ବହୁତ ସୈନ୍ୟ ହତାହତ ହେଲେ। କିନ୍ତୁ ମଣ୍ଟରୋଜଙ୍କ ସୈନ୍ୟମାନେ ଯେତେବେଳେ ମାର୍କୁଇସ୍‌ଙ୍କ ସେନାବାହିନୀର ନିକଟବର୍ତ୍ତୀ ହେଲେ, ଗୁଳି ଓ ଶର କାର୍ଯ୍ୟରେ ଲାଗିପାରିଲା ନାହିଁ ଏବଂ ଯୁଦ୍ଧ ହାତାହାତି ହେଲା।

ଭୀଷଣ ଯୁଦ୍ଧ ହେଲା। ଖଡ୍‌ଗ ଓ କୁଠାର ଶବ୍ଦ ସହ ପାର୍ବତ୍ୟ ସୈନ୍ୟମାନଙ୍କ ବିକଟ ଚିତ୍କାର ଯୁଦ୍ଧଭୂମିକୁ ପ୍ରକମ୍ପିତ କରିଥିଲା। କୌଣସି ପକ୍ଷ ଇଞ୍ଚେମାତ୍ର ପଛକୁ ନ ଘୁଞ୍ଚି ଯୁଦ୍ଧ କଲେ। ମଣ୍ଟରୋଜ କିଛି ଦୂରରୁ ଯୁଦ୍ଧ ଲକ୍ଷ୍ୟ କରୁଥିଲେ। ସେ ତାଙ୍କ ଆଇରିସ୍ ଘୋଡ଼ାସବାର ସୈନ୍ୟଙ୍କୁ ବୃକ୍ଷ ଗହଳରେ ଓ ପଥରର ଆଢୁଆଳରେ ଲୁଚାଇ ରଖିଥିଲେ। ଯେତେବେଳେ ଯୁଦ୍ଧ ଶୀର୍ଷ ସୀମାରେ ପହଞ୍ଚିଲା, ସେତେବେଳେ ସେ ଦାଲ୍‌ଗେଟିଙ୍କୁ ଘୋଡ଼ାସବାର ସୈନ୍ୟସହ ତାଙ୍କ ସଙ୍ଗେ ଯୁଦ୍ଧରେ ପ୍ରବେଶ କରିବାକୁ ନିର୍ଦ୍ଦେଶ ଦେଲେ।

ମାର୍କୁଇସ୍‌ଙ୍କ ଅନୁଚରମାନେ ଏ ପ୍ରକାର ଆକ୍ରମଣରେ ସ୍ତମ୍ଭିତ ହୋଇଗଲେ। ସେମାନେ ନୂତନ ସୈନ୍ୟବାହିନୀର ଆକ୍ରମଣ ଆଶା କରି ନଥିଲେ। ସେମାନେ ଆଇରିସ୍ ଘୋଡ଼ାସବାର ସୈନ୍ୟ ଦେଖି ହତୋତ୍ସାହ ହୋଇପଡ଼ିଲେ ଓ ସେମାନଙ୍କର ମାନସିକ ଦ୍ୱନ୍ଦ୍ୱ ଆରମ୍ଭ ହେଲା। ସମସ୍ତଙ୍କ ମଧ୍ୟରେ ଏକ ଆତଙ୍କ ଖେଳିଯିବାଦ୍ୱାରା ଯୁଦ୍ଧଭୂମିରୁ ସମସ୍ତେ ପଳାୟନ କରିବାକୁ ଲାଗିଲେ। ସାର୍ ଡନ୍‌କାନ୍ ଦୁଇ ତିନିଶତ ସୈନ୍ୟଙ୍କ ସହ ଶୃଙ୍ଖଳା ଆଣିବାକୁ ଯେତେ ଚେଷ୍ଟା କଲେ ମଧ୍ୟ କିଛି ଫଳ ହୋଇନଥିଲା। ମାର୍କୁଇସ୍‌ଙ୍କ ସୈନ୍ୟମାନେ ଇତସ୍ତତଃ ହୋଇ ଖେଳାଇ ହୋଇଗଲେ। ସାର୍ ଡନ୍‌କାନ୍ ତାଙ୍କ ମୁଷ୍ଟିମେୟ ସୈନ୍ୟଙ୍କ ସହ ମଣ୍ଟରୋଜଙ୍କ ସୈନ୍ୟଘେରରେ ପଡ଼ିଗଲେ। ଦାଲ୍‌ଗେଟି ଯୁଦ୍ଧରେ ପାଗଳପ୍ରାୟ ହୋଇଗଲେ। ତାଙ୍କର ପ୍ରତ୍ୟେକ ଲକ୍ଷ୍ୟ ଅବ୍ୟର୍ଥ ଥିଲା। ସେ ଡନ୍‌କାନ୍‌ଙ୍କ ନିକଟରେ ପହଞ୍ଚି ଆତ୍ମସମର୍ପଣ କରିବାକୁ ନିର୍ଦ୍ଦେଶ ଦେଲେ। ଡନ୍‌କାନ୍ ଏହାର ଉତ୍ତରରେ ତାଙ୍କୁ ଲକ୍ଷ୍ୟ କରି ପିସ୍ତଲରୁ ଗୁଳି ଫୁଟାଇଥିଲେ। ଗୁଳି ଦାଲ୍‌ଗେଟିଙ୍କ ଦେହରେ ନ ବାଜି ଗୁସ୍ତାଭ

ଦେହରେ ବାଜିଲା । ଗୁଣ୍ଡାଭ ପ୍ରାଣ ହରାଇ ଭୂପତିତ ହେଲା । ରେନାଲ୍‌ଡ୍‌ ସମ୍ମୁଖଭାଗକୁ କୁଦିପଡ଼ି ସାର୍ ଡନ୍‌କାନ୍‌ଙ୍କୁ ଖଡ୍‌ଗରେ ଆଘାତ କଲା । ସାର୍ ଡନ୍‌କାନ୍ ଆହତ ହୋଇ ପଡ଼ିଗଲେ । ଆଲାନ୍ ଆଲେ ଏହି ସମୟରେ ସେଠାରେ ଉପସ୍ଥିତ ହେଲେ ।

ଉଚ୍ଚ ସ୍ୱରରେ ସେ କହିଲେ— ବର୍ବରଗଣ ! ସାର୍ ଡନ୍‌କାନ୍‌ଙ୍କୁ ଆହତ ନ କରିବାକୁ ମୋର କଡ଼ା ନିର୍ଦ୍ଦେଶ ଥିଲେ ମଧ୍ୟ ଏପରି ବର୍ବରୋଚିତ କାର୍ଯ୍ୟ କଲା କିଏ ? ସୈନ୍ୟମାନେ ରେନାଲ୍‌ଡ୍ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କଲେ ।

ଆଲାନ୍ କ୍ରୋଧରେ କହିଲେ— ''କୁକୁର ! ତୋ ପ୍ରତି ମୁଁ ଅସ୍ତ୍ର ଚାଳନା କରିବି ନାହିଁ । କିନ୍ତୁ ତାକୁ ଅଧିକ ଆଘାତ ଦିଅ ନାହିଁ । ଶତ୍ରୁସୈନ୍ୟମାନେ ଛତ୍ରଭଙ୍ଗ ଦେଉଛନ୍ତି, ତାକୁ ଅନୁସରଣ କର ।'' ଅନ୍ୟ ସୈନ୍ୟମାନେ ଆଲାନ୍‌ଙ୍କ ନିର୍ଦ୍ଦେଶ ମାନି ଆଲାନ୍ ଓ ରେନାଲ୍‌ଡ୍‌କୁ ଛାଡ଼ି ଶତ୍ରୁ ସୈନ୍ୟମାନଙ୍କ ପଛରେ ଚାଲିଗଲେ । କିନ୍ତୁ ରୋନାଲ୍‌ଡ୍‌ର ପ୍ରତିଶୋଧ ପିପାସା ହଠାତ୍ ଜାଗ୍ରତ ହେବାରୁ ଆଲାନ୍ ପ୍ରତିରୋଧ କରିବା ପୂର୍ବରୁ ତାକୁ ଆଘାତ କଲା । ତାଙ୍କ ପ୍ରତି ଅସ୍ତ୍ରଚାଳନା କରିବାର ଦୁଃସାହସରେ ବିସ୍ମିତ ହୋଇ ଆଲାନ୍ ତା'ର କାରଣ ପଚାରିଲେ । ''ମୁଁ ଦସ୍ୟୁପୁତ୍ର''— ରେନାଲ୍‌ଡ୍ ମ୍ୟାକାର୍ ପୁନରାୟ ଆଘାତ କରି ଉତ୍ତର ଦେଲା । ଦୁଇଜଣଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଆଲାନ୍ ରେନାଲ୍‌ଡ୍ ଅପେକ୍ଷା ବଳଶାଳୀ ଥିଲେ । ତାକୁ ଦସ୍ୟୁ ଜାଣିବାରୁ ତାଙ୍କ କ୍ରୋଧ ଦ୍ୱିଗୁଣିତ ହେଲା । ସେ ଅକ୍ଲେଶରେ ରେନାଲ୍‌ଡ୍‌କୁ ଆଘାତ କରି ଭୂତଳଶାୟୀ କଲେ । ତା' ଉପରେ ପାଦ ରଖି ତାକୁ ହତ୍ୟା କରିବା ସମୟରେ ଦାଲ୍‌ଗେଟି ଆସି ତା'ର ପ୍ରତିରୋଧ କଲେ ।

''ଅସ୍ତ୍ର ସମ୍ବରଣ କରନ୍ତୁ; ଏ ବ୍ୟକ୍ତି ମୋର ଆଶ୍ରୟରେ ଅଛି''— ଦାଲ୍‌ଗେଟି କହିଲେ । ଆଲାନ୍ କହିଲେ, ''ପାଗଳ, ଦୂରେଇଯାଅ ।'' କିନ୍ତୁ ଦାଲ୍‌ଗେଟି ଅବିଚଳିତ ଭାବେ କହିଲେ, ''ଯଦି ତାକୁ ହତ୍ୟା କରିବାକୁ ଚାହୁଁଛନ୍ତି, ତେବେ ମୋ ସହିତ ଯୁଦ୍ଧ କରନ୍ତୁ । ମୋତେ

ପରାସ୍ତ କରିବାକୁ ହେବ।" ଆଲାନ୍ ଓ ଦାଲ୍‌ଗେତି ଯୁଦ୍ଧରେ ବ୍ୟାପୃତ ହେଲେ। ଭାଗ୍ୟବଶତଃ ମଣ୍ଡରୋଜ ଦୂରରୁ ଏ ଯୁଦ୍ଧ ଦେଖିପାରି ସେଠାକୁ ଶୀଘ୍ର ଆସି ଯୁଦ୍ଧ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ। ବିଜୟଭୂମିରେ ପରସ୍ପର ମଧ୍ୟରେ ଯୁଦ୍ଧ କରିବା ସେ ପସନ୍ଦ କରିପାରି ନ ଥିଲେ। ଦାଲ୍‌ଗେତି କହିଲେ– ଏହା ମୋର ଦୋଷ ନୁହେଁ। ମୋ ଆଶ୍ରିତ ଲୋକକୁ ହତ୍ୟା କରିବାକୁ ଏ ଚାହୁଁଥିଲେ। ଆଲାନ୍ କହିଲେ– ମୋର ପ୍ରତିଶୋଧ ନେବାରେ ଏ ବାଧା ଜନ୍ମାଇଥିଲେ। ମଣ୍ଡରୋଜ କହିଲେ– "ତୁମେମାନେ ପରସ୍ପର ମଧ୍ୟରେ ପରେ ଯୁଦ୍ଧ କରିପାରିବ। ବର୍ତ୍ତମାନ ତୁମ ଦୁଇଜଣଙ୍କ ପାଇଁ ମୋର ବିଶେଷ କାମ ଅଛି। ମେଜର୍ ଦାଲ୍‌ଗେତି, ତୁମେ ଆଣ୍ଠୁମାଡ଼ି ବସ।" ଦାଲ୍‌ଗେତି ଆଣ୍ଠୁମାଡ଼ି ବସିଲେ। ମଣ୍ଡରୋଜ ତାଙ୍କ ବେକରେ ଖଣ୍ଡାର ଧାର ଛୁଆଇଁ ତାଙ୍କୁ ରାଜାଙ୍କ ନାମରେ ନାଇଟ୍ ପଦରେ ଅଭିଷିକ୍ତ କଲେ। ସେ ସାହସୀ ଓ ଅନୁଗତ ହେବାକୁ ଉପଦେଶ ଦେଇ ତାଙ୍କର କର୍ତ୍ତବ୍ୟ କରିବାକୁ ନିର୍ଦ୍ଦେଶ ଦେଲେ।

ଦାଲ୍‌ଗେତି ବିଶେଷ ଖୁସି ହେଲେ। ସେ ବର୍ତ୍ତମାନଠାରୁ ସାର୍ ଡଗାଲ୍‌ଡ୍ ଦାଲ୍‌ଗେତି ରୂପେ ସମ୍ଭାଷିତ ହେବେ। "କିନ୍ତୁ ମୋର ପ୍ରିୟ ଅଶ୍ୱ ଗୁଷ୍ଟାଭ ମୃତ। ମୁଁ କାହା ଉପରେ ସବାର ହୋଇ ଯୁଦ୍ଧ କରିବି?"– ଦାଲ୍‌ଗେତି କହିଲେ। ମଣ୍ଡରୋଜ ତାହାଙ୍କୁ ନିଜର ଅଶ୍ୱ ପୁରସ୍କାର ଦେଲେ। ବିଶେଷ କୃତଜ୍ଞତା ପ୍ରକାଶ କରି ସାର୍ ଡଗାଲ୍‌ଡ୍ ମଣ୍ଡରୋଜଙ୍କଠାରୁ ଅଶ୍ୱଟି ନେଲେ ଏବଂ ରେନାଲ୍‌ଡ୍‌କୁ ହତ୍ୟା କରାନଯିବାକୁ ଅନୁରୋଧ କରି ଅଶ୍ୱାଚାଳନା କରି ସେଠାରୁ ଚାଲିଗଲେ।

ମଣ୍ଡରୋଜଙ୍କ ପଥପ୍ରଦର୍ଶକ ଜଣେ ଦସ୍ୟୁ, ଆଲାନ୍ ଏହା ଜାଣିବାଦ୍ୱାରା ତାକୁ ଶିବିରରେ ରଖିବା ବିପଜ୍ଜନକ ହେଲା। ମଣ୍ଡରୋଜ ଜାଣିଥିଲେ ଯେ ସୁବିଧା ପାଇଲାକ୍ଷଣି ଆଲାନ୍ ତା' ଉପରେ ପ୍ରତିଶୋଧ ନେବେ। ତେଣୁ ସେ ଆଲାନ୍‌କୁ କହିଲେ– "ତୁମେ ଜଣେ ସାହସୀ ବ୍ୟକ୍ତି। ତୁମେ ଲୁଣ୍ଠନ ଓ ଅପହରଣର ବହୁତ ଉର୍ଦ୍ଧ୍ୱରେ; ତେଣୁ ତୁମେ ରେନାଲ୍‌ଡ୍ ପରି ଜଣେ ଦରିଦ୍ର ବୃଦ୍ଧକୁ ବା କାହିଁକି ହତ୍ୟା

କରିବ ? ତୁମେ ଆସ, ତୁମ ପାଇଁ ଅନ୍ୟ କାର୍ଯ୍ୟ ଅଛି। ଆମେ ଏ ଯୁଦ୍ଧରେ ଜୟଲାଭ କରିଥିବାରୁ ମାର୍କୁଇସ୍‌ଙ୍କର ବହୁତ ବନ୍ଧୁ ଆମ ସହିତ ମିଶିବାକୁ ଇଚ୍ଛୁକ। ତୁମେ ତୁମର ସାହସିକତା ନିମିତ୍ତ ବିଖ୍ୟାତ। ବନ୍ଧୁମାନେ ଓ ଶତ୍ରୁମାନେ ସମସ୍ତେ ତୁମକୁ ସମ୍ମାନ ଦେଖାନ୍ତି; ତେଣୁ ତୁମେ ଯାଇ ଦଳପତିମାନଙ୍କୁ ଆମ ପକ୍ଷଭୁକ୍ତ କରିବାକୁ ଚେଷ୍ଟାକର।"

ଆଲାନ୍ ସ୍ୱୀକୃତି ଦେଇ ଅଶ୍ୱପୃଷ୍ଠରେ ଯିବା ପୂର୍ବରୁ ଡନ୍‌କାନ୍ କ୍ୟାମ୍ପବେଲଙ୍କ ଯତ୍ନ ନେବାକୁ ଅନୁରୋଧ କରିଥିଲେ। ସେ କହିଥିଲେ – ଡନ୍‌କାନ୍ ଶତ୍ରୁ ହେଲେ ମଧ୍ୟ ସମ୍ମାନାସ୍ପଦ ବ୍ୟକ୍ତି। ଯୁଦ୍ଧକ୍ଷେତ୍ର ନିକଟରେ ଏକ ଦୁର୍ଗ ଥିଲା। ମଣ୍ଟ୍‌ରୋଜ ଡନ୍‌କାନ୍‌ଙ୍କୁ ସେଠାକୁ ନେବା ବ୍ୟବସ୍ଥା କରିଥିଲେ ଏବଂ ଦଳେ ଆଇରିସ୍ ଲୋକଙ୍କୁ ରେନାଲ୍ଡ୍‌ର ଯତ୍ନ ନେବାକୁ ନିର୍ଦ୍ଦେଶ ଦେଇଥିଲେ। ତା'ପରେ ଅଶ୍ୱାରୋହଣ କରି ସେ ଯୁଦ୍ଧଭୂମି ପରିଦର୍ଶନରେ ଚାଲିଗଲେ। ମାର୍କୁଇସ୍‌ଙ୍କର ତିନିହଜାର ସୈନ୍ୟ ମଧ୍ୟରୁ ଅର୍ଦ୍ଧାଧିକ ମୃତ୍ୟୁବରଣ କରିଥିଲେ ଏବଂ ବହୁସଂଖ୍ୟକ ହ୍ରଦ ଦେଇ ପଳାଇଯିବାକୁ ଚେଷ୍ଟା କରିବାବେଳେ ବୁଡ଼ିମରିଥିଲେ। ଅବଶିଷ୍ଟ ସୈନ୍ୟମାନେ ଆତ୍ମସମର୍ପଣ କରିଥିଲେ। ଆର୍ଗାଇଲର ମାର୍କୁଇସ୍ ଲଜ୍ଜାଜନକଭାବେ ପ୍ରାଣ ଘେନି ଯୁଦ୍ଧଭୂମିରୁ ଚାଲିଯାଇଥିଲେ।

## ରହସ୍ୟ ଉଦ୍‌ଘାଟନ

ଯୁଦ୍ଧରେ ମଣ୍ଟ୍‌ରୋଜ ମଧ୍ୟ ବହୁ ସାହସୀ ଅନୁଚର ହରାଇଥିଲେ। ଲର୍ଡ୍ ମେଣ୍ଟିଥ୍ ସାମାନ୍ୟ ଆଘାତ ପାଇଥିଲେ। ସେ ମାର୍କୁଇସ୍‌ଙ୍କ ପତାକାକୁ ହସ୍ତଗତ କରି ବୀରଦର୍ପରେ ମଣ୍ଟ୍‌ରୋଜଙ୍କୁ ଭେଟି ଦେଇଥିଲେ। ମଣ୍ଟ୍‌ରୋଜ ମେଣ୍ଟିଥ୍‌ଙ୍କୁ ଅତ୍ୟନ୍ତ ଭଲପାଉଥିଲେ ଏବଂ ତାଙ୍କର ସାହସିକତା ଯୋଗୁଁ ତାଙ୍କୁ ଅଭିନନ୍ଦନ ଜଣାଇଲେ।

ହଠାତ୍ ମଣ୍ଟ୍‌ରୋଜ ମେଣ୍ଟିଥ୍‌ଙ୍କୁ ପଚାରିଲେ – ତୁମେ ଆନଟ୍‌ଲାଇଲଙ୍କୁ ଏବେ ଦେଖିଛ ? ମେଣ୍ଟିଥ୍‌ଙ୍କ ମୁଖ ଲଜ୍ଜାରେ ନାଲି ପଡ଼ିଗଲା। ସେ

କହିଲେ— ହଁ, ଯୁଦ୍ଧ ଆରମ୍ଭରେ ଅଧଘଣ୍ଟାକ ପୂର୍ବରୁ ମୁହୂର୍ତ୍ତକ ପାଇଁ ତାଙ୍କୁ ଦେଖିଥିଲି। ମଣ୍ଡ୍‌ରୋଙ୍କ କହିଲେ— ବନ୍ଧୁ ମେଣ୍ଟିଥ୍! ତୁମେ ଆନଟ୍‌କୁ ନିଶ୍ଚୟ ଭଲପାଉଛ। ସେ ସୁନ୍ଦରୀ ଓ ବୁଦ୍ଧିମତୀ; କିନ୍ତୁ ତୁମେ ସାବଧାନ ହେବା ଉଚିତ। ଆଲାନ୍ ମଧ ତାକୁ ଭଲପାଏ। ତୁମେ ଯଦି ଆନଟକୁ ବିବାହ କରିବ, ଆଲାନ୍ ହିଁ ତୁମର ବିପଜ୍ଜନକ ପ୍ରତିଦ୍ୱନ୍ଦ୍ୱୀ ହେବ। ମେଣ୍ଟିଥ୍ ଉତ୍ତର ଦେଲେ— ମୁଁ ଅବଶ୍ୟ ଆନଟକୁ ଭଲପାଏ; କିନ୍ତୁ ତାଙ୍କର ଜନ୍ମବୃତ୍ତାନ୍ତ ବର୍ତ୍ତମାନ ମଧ ରହସ୍ୟମୟ। ବୋଧହୁଏ କୌଣସି ଉଚ୍ଚଭୂମି ଅଞ୍ଚଳ ଦସ୍ୟୁର ଝିଅ ଏବଂ ସେ ଆଲେଙ୍କ ଗୃହର ଏକ ଭୃତ୍ୟା। ଆଲାନ୍ ଏବଂ ମୁଁ ତା ବିଷୟରେ କଥାବାର୍ତ୍ତା ହୋଇଛୁ ଏବଂ ତାକୁ ମୁଁ ଖୋଲାଖୋଲିଭାବେ ଜଣାଇଦେଇଛି ଯେ ସମ୍ଭ୍ରାନ୍ତ ପରିବାରରେ ଜନ୍ମଲାଭ କରିଥିବା ଯୁବତୀଙ୍କୁ କେବଳ ମୁଁ ବିବାହ କରିବି। ଆନଟ୍‌ଲୋଇଲ ସମ୍ଭ୍ରାନ୍ତ ପରିବାରରେ ଜନ୍ମି ନାହାନ୍ତି। ତେଣୁ ମୁଁ ତାଙ୍କୁ ବିବାହ କରିବି ନାହିଁ। ମଣ୍ଡ୍‌ରୋଙ୍କ କହିଲେ— ତୁମେ ଦୁଇଜଣ ତାଙ୍କୁ ଭଲ ପାଉଛ; କିନ୍ତୁ କେହି ବିବାହ କରିବାକୁ ପ୍ରସ୍ତୁତ ନୁହଁ। ମେଣ୍ଟିଥ୍. କହିଲେ— ମୁଁ ସେ କଥା କହୁନାହିଁ। ମୁଁ ତାଙ୍କୁ ବିବାହ କରିବାକୁ ଇଚ୍ଛା କରୁଛି। କିନ୍ତୁ ସେ ସମ୍ଭ୍ରାନ୍ତ ପରିବାରର ଝିଅ ନ ହେଲେ ବିବାହ ହେବା ଅସମ୍ଭବ। ମଣ୍ଡ୍‌ରୋଙ୍କ ମେଣ୍ଟିଥ୍‌ଙ୍କ କଥାରେ ଦୁଃଖ ପ୍ରକାଶ କରି ତାଙ୍କ ସହିତ କରମର୍ଦ୍ଦନ କଲେ। ତାପରେ ସେ ଦୁର୍ଗଆଡ଼କୁ ଚାଲିଲେ।

ସେ କାଳରେ ଉଚ୍ଚଭୂମି ଅଞ୍ଚଳର ସ୍ତ୍ରୀମାନେ ଔଷଧ ବିଦ୍ୟାରେ ପାରିଦର୍ଶିତା ଲାଭ କରିଥିଲେ। ଆନଟ୍‌ଲୋଇଲ ମଧ ଔଷଧ ବ୍ୟବସ୍ଥା କରିବାରେ ଦକ୍ଷା ଥିଲେ। ଯୁଦ୍ଧ ପରେ ସେ ଏବଂ ତାଙ୍କର ସହଚରୀବୃନ୍ଦ ଯୁଦ୍ଧକ୍ଷେତ୍ରରେ ଆହତ ସୈନ୍ୟମାନଙ୍କର ବହୁତ ସେବା କରିଥିଲେ। ବର୍ତ୍ତମାନ ସେ ଦୁର୍ଗର ଏକ କୋଠରିରେ ନିଜ କାର୍ଯ୍ୟରେ ବ୍ୟସ୍ତ ଥିବାବେଳେ ହଠାତ୍ ଆଲାନ୍ ସେଠାରେ ପ୍ରବେଶ କଲେ। ସେ ତାଙ୍କ ଆଗରେ ନୀରବରେ ଠିଆହୋଇ ରହିଲେ। ଆନଟ୍ ପଚାରିଲେ— ଆପଣ କଣ ଆପଣଙ୍କ ଯାତ୍ରାରେ ବାହାରିନାହାନ୍ତି ? ଆଲାନ୍ ଉତ୍ତର

ଦେଲେ— ମୋ ସାଥୀମାନେ ମୋତେ ଅପେକ୍ଷା କରିଛନ୍ତି। ଏହି ମୁହୂର୍ତ୍ତରେ ମୁଁ ତାଙ୍କ ସଙ୍ଗେ ଚାଲିଯିବି।

ତାପରେ ଆନଟଙ୍କର କର ଧାରଣ କରି ଏକ ଝରକା ନିକଟକୁ ନେଇଥିଲେ। ସେଠାରୁ ସେମାନେ ଯୁଦ୍ଧଭୂମି ଓ ସେଠାର ମୃତ ଓ ଆହତ ସୈନିକମାନଙ୍କୁ ଦେଖିପାରିଥିଲେ। ଆନଟ୍ ଚକ୍ଷୁଦ୍ୱୟକୁ ହସ୍ତ ଦ୍ୱାରା ଢାଙ୍କି କହିଲେ— ଏହା ଏକ ଭୀଷଣ ଦୃଶ୍ୟ। ଆଲାନ୍ କହିଲେ— ତୁମେ ଏଥିରେ ଅଭ୍ୟସ୍ତ ହେବା ଦରକାର, କାରଣ ଅବିଳମ୍ବେ ମେଣ୍ଡିଥ୍, ଆଙ୍ଗସ୍ ଏବଂ ମୁଁ ଏହିପରି ମୃତ୍ୟୁ ବରଣ କରିବୁ। ତା'ପରେ ହଠାତ୍ ସେ ଆନଟଙ୍କୁ ପଚାରିଲେ— ଆନଟ୍, ତୁମେ ମୋତେ ଭଲ ପାଅ ନାହିଁ? ଆନଟ କହିଲେ, "ଆପଣ ଏପରି କଥା କିପରି କହୁଛନ୍ତି? ମୁଁ ଆପଣଙ୍କୁ ଭାଇ ଭଳି ଓ ମୋର ରକ୍ଷାକର୍ତ୍ତା ହିସାବରେ ଖୁବ୍ ଭଲପାଏ।" ଆଲାନ୍ କହିଲେ— "ନା, ତୁମେ ମୋତେ ଭଲ ପାଅ ନାହିଁ, ତୁମେ ମେଣ୍ଡିଥ୍‌କୁ ଭଲ ପାଅ। ମୁଁ ତୁମ ପାଖରେ ଜଣେ ମୃତ ସୈନିକ ବ୍ୟତୀତ ଅନ୍ୟ କିଛି ନୁହେଁ। ତୁମେ ଯଦି ମୋତେ ଭଲ ପାଉଛ ତେବେ ବର୍ତ୍ତମାନ ମୋ ସଙ୍ଗରେ ଆସ।" "ମୁଁ ଯାଇପାରିବି ନାହିଁ। ଏଠାରେ ଥିବା ଆହତ ବ୍ୟକ୍ତିମାନେ ମୋର ସେବାଶୁଶ୍ରୂଷା ଦରକାର କରୁଛନ୍ତି।" —ଆନଟ ଉତ୍ତର ଦେଲେ। ରାଗରେ ଆଲାନ୍ କହିଲେ— "ତୁମକୁ ଛାଡ଼ି ମୁଁ ଯାଉଛି। କିନ୍ତୁ ମନେରଖ, ତୁମେ ଯଦି ମୋ ଛଡ଼ା ମେଣ୍ଡିଥ୍‌କୁ ପସନ୍ଦ କର, ତେବେ ସେ ଆଘାତ ମୁଁ ଭୁଲିପାରିବି ନାହିଁ। ମୁଁ ଏକ ଭୀଷଣ ପ୍ରତିଶୋଧ ନେବି।" —ଏହା କହି ସେ କକ୍ଷରୁ ନିଷ୍କ୍ରାନ୍ତ ହେଲେ।

ଆଲାନ୍‌ଙ୍କ ବାକ୍ୟରେ ଆନଟ୍‌ଲାଇଇଲ ଭୟଭୀତ ହେଲେ। ଆଲାନ୍ ତାଙ୍କ ପାଇଁ ଯାହା କରିଛନ୍ତି, ସେ ସେଥିପାଇଁ ତାଙ୍କ ନିକଟରେ କୃତଜ୍ଞ; କିନ୍ତୁ ବର୍ତ୍ତମାନ ତାଙ୍କ ଭାଷା ତାଙ୍କୁ ଭୀତତ୍ରସ୍ତ କଲା। ଆଲାନ୍ କିପରି ବଦମାସ, ତାହା ସେ ଜାଣିଥିଲେ। ସେ ମେଣ୍ଡିଥ୍‌କୁ ହୃଦୟ ଦେଇ ଭଲପାଉଥିଲେ ଏବଂ ତାଙ୍କ ପାଇଁ ମେଣ୍ଡିଥ୍‌କୁ ବିପଦରେ ପକାଇବାକୁ ଇଚ୍ଛା କରୁ ନଥିଲେ। ତାଙ୍କ ଭାବନାରେ ପୂର୍ଣ୍ଣଚ୍ଛେଦ

ପକାଇ ଏହି ସମୟରେ ଦାଲ୍‌ଗେତି ସେ କକ୍ଷରେ ପ୍ରବେଶ କଲେ।

ସେ କହିଲେ, ''ସାର୍ ଡନ୍‌କାନ୍ କ୍ୟାମ୍ପବେଲ୍ ଆହତ ହୋଇ ଅସୁସ୍ଥ ହୋଇପଡ଼ିଛନ୍ତି। ଦୟାକରି ଶୀଘ୍ର ଆସି ତାଙ୍କ ସେବା କର।'' ଆନଟ୍‌ଲାଇଲ ରାଜି ହୋଇ ତାଙ୍କ ସାଙ୍ଗରେ ସାର୍ ଡନ୍‌କାନ୍ ଶୋଇଥିବା କକ୍ଷରେ ପ୍ରବେଶ କଲେ। ସେଠାରେ ଲର୍ଡ଼ ମେଣ୍ଟିଥ୍‌କୁ ଦେଖି ସେ ଆଶ୍ଚର୍ଯ୍ୟ ହେଲେ। ସେ ଇତସ୍ତତଃ ହେଲେ ଏବଂ ନିଜର ଭାବ ଲୁଚାଇବା ପାଇଁ ସାର୍ ଡନ୍‌କାନ୍‌ଙ୍କ କ୍ଷତ ପରୀକ୍ଷା କରିବାକୁ ଲାଗିଲେ। ଏହି ସମୟରେ ସାର୍ ଦାଲ୍‌ଗେତି ସାର୍ ଡନ୍‌କାନ୍‌କୁ କହିଲେ– ମୋର ଜଣେ ବନ୍ଧୁ ଆପଣଙ୍କୁ ଦେଖିବାକୁ ଇଚ୍ଛା କରୁଛି। ମୁଁ ତାକୁ ଆଣିବି କି ?

ସାର୍ ଡନ୍‌କାନ୍ ଅନୁମତି ଦେଲେ। ଦାଲ୍‌ଗେତିଙ୍କଠାରୁ ନିର୍ଦ୍ଦେଶ ପାଇ ଛଅଜଣ ଲୋକ ରେନାଲ୍‌ଡକୁ ସେଠାକୁ ଆଣିଲେ ଏବଂ ତଳେ ଶୁଆଇଦେଲେ। ଯନ୍ତ୍ରଣାରେ ରେନାଲ୍‌ଡର ମୁଖ ବିକୃତ ଦିଶୁଥିଲା। ରକ୍ତ ବୋହି ତାର ପିନ୍ଧିଥିବା ପୋଷାକ ଭିଜି ଯାଇଥିଲା। ସେ ସାର୍ ଡନ୍‌କାନ୍‌ଙ୍କ ଆଡ଼େ ମୁଣ୍ଡ ବୁଲାଇ ପଚାରିଲା– ''ଆପଣ କ'ଣ ସାର୍ ଡନ୍‌କାନ୍ କ୍ୟାମ୍ପବେଲ ?'' ସାର୍ ଡନକାନ୍ ହଁ କଲେ ଏବଂ ପଚାରିଲେ– ''ତୁମେ କ'ଣ ଚାହୁଁଛ ? ମୁଁ ମୃତ୍ୟୁର ସନ୍ନିକଟ ହେଉଛି।'' ରେନାଲ୍‌ଡ଼ କହିଲା– ମୁଁ ମଧ ମରିବାକୁ ଯାଉଛି; କିନ୍ତୁ ମରିବା ପୂର୍ବରୁ, ତୁମେ ମୋ ବିରୁଦ୍ଧ ପକ୍ଷ ହୋଇଥିଲେ ମଧ, ତୁମକୁ କିଛି ସାହାଯ୍ୟ କରିବାକୁ ଇଚ୍ଛା କରୁଛି। ମୁଁ ରେନାଲ୍‌ଡ଼ ମ୍ୟାକାଗ୍– ଦସ୍ୟୁସନ୍ତାନ– ମୁଁ ତୁମର ଦୁର୍ଗ ଧ୍ୱଂସ କରିଥିଲି ଏବଂ ତୁମର ପୁତ୍ରମାନଙ୍କୁ ହତ୍ୟା କରିଥିଲି।

ଡନ୍‌କାନ୍ ଶଯ୍ୟା ଉପରୁ ମେଣ୍ଟିଥ୍‌କୁ ଲକ୍ଷ୍ୟ କରି କହିଲେ– ଏ ବ୍ୟକ୍ତି ଏକ ପାଷଣ୍ଡ– ଦସ୍ୟୁ; ଆମର, ତୁମର ଏବଂ ଆନେ ପରିବାରର ଶତ୍ରୁ। ମେଣ୍ଟିଥ୍ କହିଲେ– ''ସେ ଦଣ୍ଡପାଇବ, ତାହାକୁ ଏଠାରୁ ବାହାର କରି ନିଅ।'' ସାର୍ ଦାଲ୍‌ଗେତି କହିଲେ– ''ତାକୁ ଏଠାରୁ ନେଇପାରିବ ନାହିଁ। ସେ ମୋର ବନ୍ଧୁ, ପଥପ୍ରଦର୍ଶକ ଏବଂ

ବର୍ତ୍ତମାନ ସେ ମୋ ଦାୟିତ୍ୱରେ ଅଛି।'' କଳହ ବୃଦ୍ଧି ପାଇବା ପୂର୍ବରୁ ରେନାଲ୍ଡ଼ ଉଚ୍ଚ ସ୍ୱରରେ ଡନ୍‌କାନ୍‌ଙ୍କୁ ଲକ୍ଷ୍ୟ କରି କହିଲା– ''ତୁମେ ମୋର ଶେଷ ମୁହୂର୍ତ୍ତରେ ମୋତେ ଫାଶୀ ଦେଲେ ମଧ ମୋର ରହସ୍ୟ ଜାଣିବାକୁ ପାଇବ ନାହିଁ। ସେ ରହସ୍ୟ ଉପରେ ହିଁ ତୁମ ଜୀବନର ଆନନ୍ଦ ନିର୍ଭର କରୁଛି। ମୁଁ ଯଦି କହେ ତୁମର ଏକ ସନ୍ତାନ ବଞ୍ଚିଛି, ତେବେ ସାର୍ ଡନ୍‌କାନ୍– ତୁମେ ମୋତେ କଣ ଦେବ ?'' ଭୟ, ଘୃଣା ଓ ଉଦ୍‌ବେଗପୂର୍ଣ୍ଣ କଣ୍ଠରେ ସାର୍ ଡନ୍‌କାନ୍ କହିଲେ– ''ତୁ ଯଦି ସତ୍ୟ କହୁଥାଉ, ତେବେ ତୁ ମୋର ଯାହା ଅନିଷ୍ଟ କରିଛୁ ସେଥିପାଇଁ ତୋତେ କ୍ଷମା ଦେବି।'' ରେନାଲଡ୍ ଆନଟଲାଇଲଙ୍କୁ ନିକଟକୁ ଆସିବାକୁ କହିଲା ଓ କହୁଣୀରେ ଭରାଦେଇ ସେ ଆନଟ୍‌ଙ୍କୁ କହିଲା– ''ମୋତେ ତୁମେ ଚିହ୍ନି ପାରିବ ନାହିଁ। କିନ୍ତୁ ପିଲାଦିନେ ମୋତେ ପିତାସଦୃଶ ଭଲ ପାଉଥିଲ। ଆଗେଇ ଆସି କୁହ ଯେ ତୁମେ ଦସ୍ୟୁ-ସନ୍ତାନ ନୁହଁ। ସେମାନଙ୍କୁ କହ, ତୁମେ ସାର୍ ଡନ୍‌କାନ୍ କ୍ୟାମ୍ପବେଲଙ୍କର ବଞ୍ଚିଥିବା ଏକମାତ୍ର ସନ୍ତାନ।''

ଆନଟ କହିଲେ, ''ତୁମେ କ'ଣ ସତ୍ୟ କହୁଛ ? କିମ୍ୱା ଏହା ଏକ ପ୍ରଳାପ ?''

ରେନାଲ୍ଡ଼ କହିଲା– ''ଆନଟ, ମୁଁ ଯାହା କହିଲି ତାର ପ୍ରମାଣ ଦେଇପାରିବି। ବର୍ତ୍ତମାନ ପାଇଁ ଆମକୁ ଏକାକୀ ଛାଡ଼ିଦିଅ। ମୁଁ ଯେତିକି ତୁମ ଭବିଷ୍ୟତ ବିଷୟରେ ଭାବୁଛି ସେତିକି ଦୁଃଖିତ ହେଉଛି।''

ସାର୍ ଡନ୍‌କାନ୍ କ୍ୟାମ୍ପବେଲଙ୍କ ପାଖକୁ ଲାଗିଯାଇ ଆନଟ କହିଲା– ''ମୋ ପିତାଙ୍କୁ ଛାଡ଼ି ମୁଁ କୁଆଡ଼େ ଯିବି ନାହିଁ।'' ମେଣ୍ଟିଥ୍ କହିଲେ– ''ରେନାଲଡ ଏବଂ ମୁଁ ଅନ୍ୟ କକ୍ଷକୁ ଯିବୁ। ମୁଁ ନିଜେ ପ୍ରମାଣ ସଂଗ୍ରହ କରିନେବି। ସାର୍ ଦାଲ୍‌ଗେଟି ମୋତେ ସାହାଯ୍ୟ କରିବେ। ତା'ପରେ ମେଣ୍ଟିଥ୍ ଓ ଦାଲ୍‌ଗେଟି ଆହତ ରେନାଲ୍ଡ଼ ସହ ସେ କକ୍ଷରୁ ନିଷ୍କ୍ରାନ୍ତ ହେଲେ।

## ଉପସଂହାର

ରେନାଲ୍ଡ୍‌ର କାହାଣୀ ମେଣ୍ଟିଥ୍‌ର ଆର୍ଲ ତନ୍ନ ତନ୍ନ କରି ବିଶ୍ଳେଷଣ କଲେ। ସେ ତାର ଅନୁଚରଦ୍ୱୟଙ୍କୁ ମଧ୍ୟ ପଚାରିଲେ। ତାପରେ ସାର୍ ଡନ୍‌କାନ୍‌ଙ୍କ ସହ ପରାମର୍ଶ କଲେ। ଶେଷରେ ରେନାଲ୍ଡ୍ କଥାରେ ସତ୍ୟତା ଜଣାଗଲା। ସାର୍ ଡନ୍‌କାନ୍ ନିଜ ଝିଅର ବାମ ବାହୁରେ ଏକ ତିଳ ଚିହ୍ନ ଥିବାର କହିଲେ। ତାହା ଆନଟ୍‌ଲାଇଲଙ୍କ ବାମ ହାତରେ ଥିବା ମଧ୍ୟ ଦେଖାଗଲା। ଆନଟ୍‌ଲାଇଲ ପ୍ରକୃତରେ ସାର୍ ଡନ୍‌କାନ୍‌ଙ୍କ ଝିଅ ବୋଲି ପ୍ରମାଣିତ ହେଲା।

ରେନାଲ୍ଡ୍ ତାପରେ ତାର ନାତି କେନେଥ୍ ସହ କଥାବାର୍ତ୍ତା କରିବାକୁ ଇଚ୍ଛା କଲା। ରେନାଲ୍ଡ୍ ଶୋଇଥିବା ଘର କୋଣରେ କେନେଥ୍ ଲୁଚିକରି ଥିଲା। ତାକୁ ତାର ଜେଜେବାପାଙ୍କ ନିକଟକୁ ଅଣାଗଲା। କେବଳ ଦାଲ୍‌ଗେଟିଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଗୃହ ଛାଡ଼ି ଚାଲିଗଲେ। କେନେଥ୍‌କୁ ଲକ୍ଷ୍ୟ କରି ରେନାଲ୍ଡ୍ କହିଲା– "ମୋର ଶେଷ କଥା ଶୁଣ। ଆଲାନ୍ ଆଲେ କିଛି ସମୟ ପୂର୍ବରୁ ଏ ଶିବିର ତ୍ୟାଗ କରି ଉତ୍ତର ଦିଗରେ ଯାଇଛନ୍ତି। ଶୀଘ୍ର ତାଙ୍କର ଅନୁସରଣ କର। ତାଙ୍କୁ କହ, ଆନଟ୍ ଲାଇଲ ସାର୍ ଡନ୍‌କାନ୍‌ଙ୍କ ଝିଅ ବୋଲି ପ୍ରମାଣିତ ହେଲାଣି ଓ ଆର୍ଲ ମେଣ୍ଟିଥ୍ ତାଙ୍କୁ ବିଭା ହେବାକୁ ଯାଉଛନ୍ତି। ତୁ ତାଙ୍କୁ ବିବାହ ନିମନ୍ତ୍ରଣ ଦେବାକୁ ଆସିଛୁ। ଏତିକି କହି ତୁ ଉଭେଇ ଯିବା ଠିକ୍ ହେବ। ମୋର ସ୍ନେହର କେନେଥ୍, ବର୍ତ୍ତମାନ ଯାଆ, ତୋର ମୁଖ ମୁଁ ଆଉ ଦେଖିପାରିବି ନାହିଁ। ଯିବା ପୂର୍ବରୁ ମୋର ଶେଷ ନିର୍ଦ୍ଦେଶ ମନେରଖ, ଦସ୍ୟୁସନ୍ତାନମାନଙ୍କର ଭାଗ୍ୟ ମନେରଖ। ସ୍ୱାଧୀନ ଭାବରେ ରହ। ଆମର ବନ୍ଧୁମାନଙ୍କୁ ସାହାଯ୍ୟ କର ଏବଂ ଶତ୍ରୁମାନଙ୍କର ପ୍ରତିଶୋଧ ନେ'।" କେନେଥ୍ ଆଣ୍ଠେଇପଡ଼ି ମୁମୂର୍ଷୁ ଜେଜେବାପାଙ୍କର ଶିର ଚୁମ୍ବନ

କଲେ। କିନ୍ତୁ ତା ଚକ୍ଷୁରେ ଲୋତକ ଦେଖାଗଲା ନାହିଁ। ସେ ଆଲାନ୍‌କୁ ଦେଖା କରିବାକୁ ଚାଲିଗଲା। ତାପରେ ତାକୁ ଝରକା ପାଖକୁ ନେବାକୁ ରେନାଲ୍‌ଡ଼ ସାର୍ ଦାଲ୍‌ଗେଟିଙ୍କୁ ଅନୁରୋଧ କଲା। ସାର୍ ଦାଲ୍‌ଗେଟି ତାହାକୁ ଉଠାଇ ଝରକା ନିକଟକୁ ନେଇଗଲେ। ରେନାଲ୍‌ଡ଼ ଝରକା ଦେଇ ଦୂର ପର୍ବତ ଶିଖରରେ କୁଝଟିକା ଘନୀଭୂତ ହେବାର ଦୃଶ୍ୟ ଦେଖିଲା। ସେ କହିଲା, ''ହେ କୁଝଟିକାର ଆତ୍ମା, ମୋତେ ଗ୍ରହଣ କର।'' —ଏହା କହି ସେ ଦାଲ୍‌ଗେଟିଙ୍କ ବାହୁ ମଧ୍ୟରେ ପ୍ରାଣତ୍ୟାଗ କଲା।

ଏ ମଧ୍ୟରେ ମେଣ୍ଟିଥ୍ ଆନଟକୁ ସାର୍ ଡନ୍‌କାନ୍ ନିକଟରେ ଛାଡ଼ି ମଣ୍ଟ୍‌ରୋଜଙ୍କ ସହ ସେଦିନ ଘଟଣାବଳୀର ଆଲୋଚନା କରୁଥିଲେ। ମଣ୍ଟ୍‌ରୋଜ ମେଣ୍ଟିଥ୍‌କୁ କହିଲେ— ''ରେନାଲ୍‌ଡ଼ର କଥା ତୁମର ଆନନ୍ଦ ବର୍ଦ୍ଧନ କରିଥିବ। ତୁମେ ଯେତେବେଳେ ଆନଟକୁ ସାର୍ ଡନ୍‌କାନ୍‌ଙ୍କ ସନ୍ତାନ ବୋଲି ଜାଣିଲ, ସେଥିରେ ତାକୁ ବିବାହ କରିବାକୁ ତୁମର କୌଣସି ଆପତ୍ତି ନାହିଁ। କିନ୍ତୁ ମୁହୂର୍ତ୍ତକ ପାଇଁ ଭାବ, ସାର୍ ଡନକାନ୍ ଆମ ଶତ୍ରୁ ପକ୍ଷର ଲୋକ; ସେ ଆମ ରାଜାଙ୍କୁ ଘୃଣା କରନ୍ତି। ଆମେମାନେ ରାଜାଙ୍କ ପାଇଁ ଯୁଦ୍ଧ କରୁଛେ। ତେଣୁ ଶତ୍ରୁର କନ୍ୟାକୁ ବିବାହ କରିବା କ'ଣ ସମୀଚୀନ ହେବ?''

ମେଣ୍ଟିଥ୍ ଉତ୍ତର ଦେଲେ— ''ଆନଟ ଲାଇଲକୁ ବିବାହ କରିବାଦ୍ୱାରା ମୁଁ ସାର୍ ଡନ୍‌କାନ୍‌କୁ ରାଜାଙ୍କ ପକ୍ଷରେ ପ୍ରଭାବିତ କରିପାରିବି। ଅନ୍ୟ ପକ୍ଷରେ ସେ ବର୍ତ୍ତମାନ ମୃତ୍ୟୁମୁଖରେ। ଯଦି ଆନଟ୍‌ଲାଇଲ ତାଙ୍କ ସଙ୍ଗେ ତାଙ୍କ ଦୁର୍ଗକୁ ଯାଏ ଏବଂ ସେଠାରେ ସାର୍ ଡନ୍‌କାନ୍‌ଙ୍କ ମୃତ୍ୟୁ ହୁଏ, ତେବେ ଆର୍ଗାଇଲ୍‌ର ମାର୍କୁଇସ୍ ତାକୁ କରଗତ କରିବେ ଏବଂ ମୋର ଆଶା ଭରସା ଧୂଳିସାତ୍ ହେବ।'' ମଣ୍ଟ୍‌ରୋଜ ତାଙ୍କ କଥାରେ ସ୍ୱୀକୃତ ହୋଇ କହିଲେ— ''ସେପରି ଅବସ୍ଥାରେ ତୁମେ ସାର୍ ଡନ୍‌କାନ୍ ଓ ଆନଟ୍ ଲାଇଲ ସହିତ ଆଲାନ୍ ଆସିବା ପୂର୍ବରୁ ଶିବିର ପରିତ୍ୟାଗ କରିବା ଉଚିତ। ଆଲାନ୍ ଆସି ପହଞ୍ଚିଗଲେ ତୁମ ଦୁଇଜଣଙ୍କ ମଧ୍ୟରେ ଭୀଷଣ ବିବାଦ ଉପସ୍ଥିତ ହେବ।'' ମେଣ୍ଟିଥ୍‌କୁ

ଶିବିର ଛାଡ଼ିବାକୁ ଅମଙ୍ଗ ହେବା ଦେଖି ମଣ୍ଟରୋଜ କହିଲେ– ତୁମେ ସାର୍ ଡନ୍‌କାନ୍‌ଙ୍କୁ ଏ ବିଷୟ କୁହ। ସେ ଯଦି ରାଜି ହୁଅନ୍ତି ତେବେ ମୁଁ ଆଙ୍ଗସ୍‌କୁ କହିବି ଏବଂ ଆଲାନ୍ ଆସିବା ପୂର୍ବରୁ ତୁମ ବିବାହର ବ୍ୟବସ୍ଥା କରିବି।’’ ଏଥିରେ ରାଜି ହୋଇ ଉଭୟ ଭିନ୍ନ ଦିଗରେ ଗଲେ।

ତା’ ପରଦିନ ପ୍ରତ୍ୟୁଷରୁ ମେଣ୍ଟିଥ୍ ସାର୍ ଡନ୍‌କାନ୍‌ଙ୍କ ନିକଟକୁ ଯାଇ ତାଙ୍କ କନ୍ୟାକୁ ବିବାହ କରିବାକୁ ଅନୁମତି ମାଗିଲେ। ସାର୍ ଡନ୍‌କାନ୍ ସ୍ୱୀକୃତ ହେଲେ ଏବଂ ବିବାହ କିପରି ଶୀଘ୍ର ଅନୁଷ୍ଠିତ ହେବ ତାର ବ୍ୟବସ୍ଥା କରିବାକୁ କହିଲେ। ସେ ଦିନ ସକାଳେ ମଣ୍ଟରୋଜ ଆଙ୍ଗସ୍‌ଙ୍କ ସଙ୍ଗେ ଦେଖା କରି ଆନଟ୍‌ଲୋଇଲର ଜନ୍ମ ବିଷୟରେ କହିଲେ। ଏଥିରେ ଆଙ୍ଗସ୍ ଖୁସି ହୋଇ କହିଲେ– ‘‘ଆଲାନ୍ ବର୍ତ୍ତମାନ ଆନଟ୍‌କୁ ବିବାହ କରିପାରେ। ତାର ବିଷର୍ଣ୍ଣତା ସେ ସବୁବେଳେ ଦୂର କରିପାରୁଥିଲା; ଏବଂ ଆଲାନ୍ ତାହାକୁ ଭଲପାଏ।’’ ମଣ୍ଟରୋଜ ଆଙ୍ଗସ୍‌କୁ କହିଲେ– ‘‘କିନ୍ତୁ ଏହା ହେବା ଆଉ ସମ୍ଭବ ନୁହେଁ। ମେଣ୍ଟିଥ୍ ଆନଟ୍‌କୁ ବିବାହ କରିବାକୁ ସାର୍ ଡନ୍‌କାନ୍‌ଙ୍କ ଅନୁମତି ପାଇସାରିଲେଣି। ସେମାନେ ଆଜି ସନ୍ଧ୍ୟାରେ ବିବାହ କରିବେ।’’ ଆଙ୍ଗସ୍ ଏହା ଶୁଣି ସ୍ତବ୍ଧ ହୋଇଗଲେ। ସେ କହିଲେ– ‘‘ଆନଟ୍‌ଲୋଇଲକୁ ବହୁ ଦିନରୁ ମୁଁ ବଢ଼ାଇ ଆଣିଥିଲି। ତେଣୁ ଆପଣ ତାର ବିବାହରେ ମୋତେ ଟିକିଏ ପଚାରିବା ଉଚିତ ଥିଲା। ମୁଁ ଜାଣେ, ଆଲାନ୍‌ର ବହୁତ ଦୋଷ ଅଛି; କିନ୍ତୁ ଆପଣଙ୍କ ସୈନ୍ୟବାହିନୀରେ ସେ ସର୍ବୋତ୍ତମ ଏବଂ ସର୍ବଶ୍ରେଷ୍ଠ ସାହସୀ ବ୍ୟକ୍ତି। ମୁଁ ବିଶେଷ ଦୁଃଖିତ ଯେ ଆପଣ କିମ୍ବା ଆନଟ୍‌ଲୋଇଲ କେହି ଆଲାନ୍ କଥା ଭାବିଲେ ନାହିଁ।

ଆଙ୍ଗସ୍ ଏଥିରେ ରାଗ ନ କରିବା ନିମିତ୍ତ ମଣ୍ଟରୋଜ ଅନୁରୋଧ କଲେ ଏବଂ ଶେଷରେ ଏ ଘଟଣାରେ ଆଙ୍ଗସ୍ ହସ୍ତକ୍ଷେପ ନ କରିବାର ପ୍ରତିଶ୍ରୁତି ମଧ୍ୟ ପାଇଲେ। ଆଙ୍ଗସ୍ ରାଗରେ କହିଲେ– ‘‘ମୁଁ ଏ ଘଟଣାରେ ହସ୍ତକ୍ଷେପ କରିବି ନାହିଁ। କିନ୍ତୁ ଆଲାନ୍ ତାର

ଦିବ୍ୟଦୃଷ୍ଟିବଳରେ ଏଠାରେ କ'ଣ ଘଟୁଛି ନିଶ୍ଚୟ ଜାଣିବ ଏବଂ ତାର ଆସିବାର ନିର୍ଦ୍ଧାରିତ ସମୟ ପୂର୍ବରୁ ଏଠାରେ ପହଞ୍ଚିବ।'' —ଏହା କହି ସେ କକ୍ଷରୁ ନିଷ୍କ୍ରାନ୍ତ ହେଲେ।

ସାର୍ ଦାଲ୍‌ଗେଡି ବିବାହ ଖବର ଶୁଣି ମେଣ୍ଟିଥ୍‌ଙ୍କୁ ଅଭିବାଦନ ଜଣାଇବାକୁ ଗଲେ। ସେ ମେଣ୍ଟିଥ୍‌ଙ୍କୁ ଅଭିବାଦନ କରି ସର୍ବସୁଖ କାମନା କଲେ। ସେ ମେଣ୍ଟିଥ୍‌ଙ୍କୁ କହିଲେ, ''ବିବାହରେ ଯୋଗ ଦେବାକୁ ମୋର ଭାରି ଇଚ୍ଛା। କିନ୍ତୁ ମୋର ଉପଯୁକ୍ତ ପୋଷାକ ନାହିଁ।'' ମେଣ୍ଟିଥ୍ କହିଲେ— ''ତୁମେ ନିଶ୍ଚୟ ବିବାହରେ ଯୋଗଦେବ। ସାମାନ୍ୟ ପୋଷାକର ଅଭାବରେ ମୋ ବିବାହରେ ଯୋଗ ନ ଦେବା ଅସଙ୍ଗତ ହେବ। ବର୍ତ୍ତମାନ ଏ ପୋଷାକ ନେଇ ପିନ୍ଧି ମୋ ବିବାହରେ ଯୋଗଦିଅ।'' —ଏହା କହି ସେ ଏକ ମୂଲ୍ୟବାନ୍ ପୋଷାକ ଦାଲ୍‌ଗେଡିଙ୍କୁ ଦେଲେ। ଦାଲ୍‌ଗେଡି ତାହା ନେବାକୁ ପ୍ରଥମେ କୁଣ୍ଠାବୋଧ କରୁଥିଲେ। କିନ୍ତୁ ମେଣ୍ଟିଥ୍ ଅନୁରୋଧ କରିବାରୁ ସେ ତାହା ଗ୍ରହଣ କଲେ।

ପ୍ରକୃତରେ ଏହା ମେଣ୍ଟିଥ୍‌ଙ୍କ ବିବାହ ପୋଷାକ ଥିଲା। କିନ୍ତୁ ସେ ତାହା ଦାଲ୍‌ଗେଡିଙ୍କୁ ଦେଇଥିବାରୁ ନିଜେ ଏକ ହାଲୁକା ଲୌହ ସାଞ୍ଜୁ ପିନ୍ଧି ତା' ଉପରେ ସାଧାରଣ କୋଟ୍‌ଟିଏ ପିନ୍ଧିଲେ। ବିବାହ ନିମିତ୍ତ ସମସ୍ତ ବ୍ୟବସ୍ଥା କରି ମେଣ୍ଟିଥ୍ ମଣ୍ଡ୍‌ରୋଜଙ୍କୁ ଅପେକ୍ଷା କରୁଥିଲେ। ମଣ୍ଡ୍‌ରୋଜ ସୈନ୍ୟମାନଙ୍କ ବିଷୟ ନେଇ ବିଳମ୍ବ କରିଥିଲେ। ଶେଷରେ ମେଣ୍ଟିଥ୍ ତାଙ୍କ ଗୃହର ଦ୍ୱାର ଖୋଲା ହେବା ଦେଖି ଆଗନ୍ତୁକଙ୍କୁ ମଣ୍ଡ୍‌ରୋଜ ମନେକରି ହସି ହସି କହିଲେ— ''ଆପଣ ଡେରିକଲେ।'' କିନ୍ତୁ ଗୃହ ମଧ୍ୟକୁ ଯେ ଭୀଷଣବେଗରେ ପ୍ରବେଶ କଲେ ସେ ହେଉଛନ୍ତି ଆଲାନ୍ ଆଲେ। ସେ କହିଲେ— ''ମୁଁ ଶୀଘ୍ର ଆସି ପହଞ୍ଚିଛି। ବର୍ତ୍ତମାନ ମେଣ୍ଟିଥ୍, ତୁମେ ତୁମ ଖଡ୍‌ଗ ଧରି ନିଜକୁ ରକ୍ଷାକର, ନଚେତ୍ ତୁମର ମୃତ୍ୟୁ ସୁନିଶ୍ଚିତ।'' ମେଣ୍ଟିଥ୍ ଆଶ୍ଚର୍ଯ୍ୟ ହୋଇ କହିଲେ— ''ଆଲାନ୍, ତୁମେ କ'ଣ ପାଗଳ ହେଲ?'' କିନ୍ତୁ ସେ ଦେଖିଲେ ଆଲାନ୍ କ୍ରୋଧାନ୍ଧ ହୋଇପଡ଼ିଛନ୍ତି। ମୁହଁ ତାଙ୍କର କଳା ପଡ଼ିଯାଇଛି। ଚକ୍ଷୁ ଚକ୍ରାକାରରେ ଘୂରୁଛି ଏବଂ ନାସାରୁ ଖରଶ୍ୱାସ ପ୍ରବାହିତ ହେଉଛି।

ଆଲାନ୍ ରାଗରେ ଚିତ୍କାର କଲେ— "ମେଣ୍ଟିଥ୍, ତୁମେ ମିଥ୍ୟାବାଦୀ। ତୁମେ ମୋତେ କହିଥିଲ ଯେ ତୁମେ ଆନଟ୍‌ଲାଇଲଙ୍କୁ ବିବାହ କରିବ ନାହିଁ। କିନ୍ତୁ ବର୍ତ୍ତମାନ ତୁମେ ତାଙ୍କୁ ବିବାହ କରିବାକୁ ଗୀର୍ଜାକୁ ଯାଉଛ।" ମେଣ୍ଟିଥ୍ ଉତ୍ତର ଦେଲେ— "ମୁଁ ତାଙ୍କୁ ବିବାହ କରିବି ନାହିଁ, ଏକଥା କେବେ କହିନାହିଁ। ତାଙ୍କର ଜନ୍ମ ବିଷୟ ଅଜଣା ଥିବା ପର୍ଯ୍ୟନ୍ତ ମୁଁ ତାଙ୍କୁ ବିବାହ କରିବାକୁ ନାହିଁ କରିଥିଲି। ବର୍ତ୍ତମାନ ଯେତେବେଳେ ସେ ସମ୍ଭ୍ରାନ୍ତ ବଂଶରେ ଜନ୍ମ ବୋଲି ଜାଣିଲି, ତାଙ୍କୁ କଦାପି ତୁମ ପାଇଁ ଛାଡ଼ିବି ନାହିଁ। ଆଲାନ୍ କହିଲେ— "ତେବେ ତୁମେ ତୁମ ଖଡ୍‌ଗ ଧରି ପ୍ରସ୍ତୁତ ହୁଅ। ଆମେ ପରସ୍ପରକୁ ବୁଝିବାରେ ଆଉ କିଛି ବାକି ନାହିଁ।" ମେଣ୍ଟିଥ୍ କହିଲେ— "ବର୍ତ୍ତମାନ ନୁହେଁ ଏବଂ ଏଠାରେ ମଧ୍ୟ ନୁହେଁ। ଆସନ୍ତା କାଲି ପର୍ଯ୍ୟନ୍ତ ଅପେକ୍ଷାକର ଏବଂ ତା'ପରେ ଆମେ ଦୁହେଁ ଯୁଦ୍ଧ କରିବା।" "ନା, ଆସନ୍ତା କାଲି ନୁହେଁ— ଆଜି ଏହି ମୁହୂର୍ତ୍ତରେ।" —ଏହା କହି ଆଲାନ୍ ମେଣ୍ଟିଥ୍‌ଙ୍କ ହାତକୁ ଏତେ ଜୋର୍‌ରେ ଧରିପକାଇଲେ ଯେ ତାଙ୍କ ହାତରୁ ରକ୍ତ ବହିଲା। ମେଣ୍ଟିଥ୍ ହାତ ଛିଞ୍ଚାଡ଼ି ଦେଇ ଚିତ୍କାର କଲେ— "ଯା ପାଗଳ! ଦୂର୍ ହୋଇଯା।" "ତେବେ ମୋର ଭବିଷ୍ୟତ ବାଣୀ ସତ୍ୟ ହେଉ।" —ଏହା କହି ଆଲାନ୍ ଏକ ତୀକ୍ଷ୍ଣ ଛୁରିକା ବାହାର କରି ମେଣ୍ଟିଥ୍‌ଙ୍କ ଛାତିରେ ଖୁବ୍ ଜୋର୍‌ରେ ଭୁଷିଦେଲେ। ମେଣ୍ଟିଥ୍‌ଙ୍କ ସାଞ୍ଜୁରେ ବାଜି ଛୁରିକାର ତୀକ୍ଷ୍ଣ ମୁନ ବଙ୍କା ହୋଇ ତାଙ୍କ କାନ୍ଧରେ ଭୁଷିହୋଇଗଲା। ମେଣ୍ଟିଥ୍ ଆଘାତରେ ତଳେ ପଡ଼ିଗଲେ।

ଠିକ୍ ଏହି ସମୟରେ ମଣ୍ଡ୍‌ରୋଜ ଗୃହ ମଧ୍ୟରେ ପ୍ରବେଶ କଲେ। କିନ୍ତୁ କଣ ଘଟିଛି ସେ ତାହା ଜାଣିବା ପୂର୍ବରୁ ଆଲାନ୍ ତାଙ୍କୁ ଅତିକ୍ରମ କରି, ଦୁର୍ଗର ପାହାଚ ଡେଇଁ, ବିଜୁଳି ବେଗରେ ଦୌଡ଼ି ଚାଲିଗଲେ। ମଣ୍ଡ୍‌ରୋଜ ପ୍ରହରୀମାନଙ୍କୁ ଦୁର୍ଗଦ୍ୱାର ବନ୍ଦକରି ଆଲାନ୍‌ଙ୍କୁ ଧରିବାକୁ ଏବଂ ଦରକାର ପଡ଼ିଲେ ହତ୍ୟା କରିବାକୁ ନିର୍ଦ୍ଦେଶ ଦେଲେ। ଆଲାନ୍ ପ୍ରହରୀମାନଙ୍କୁ ଆଘାତ କରି ଶିବିର ଅତିକ୍ରମ କଲେ ଓ ନଦୀକୁ ଡେଇଁପଡ଼ିଲେ। ସେ ନଦୀର ଅପରପାର୍ଶ୍ୱକୁ ପହଁରି ଯାଇ

ଜଙ୍ଗଲରେ ଅଦୃଶ୍ୟ ହେଲେ ।

ସେହି ଦିନ ସନ୍ଧ୍ୟାରେ ଆଙ୍ଗସ୍ ଆଲେ ତାଙ୍କ ଅନୁଚରମାନଙ୍କ ସହ ଗୃହକୁ ଫେରିଗଲେ । ମଣ୍ଡରୋଜଙ୍କ ସହ ସେ ଆଉ ସହଯୋଗ କଲେ ନାହିଁ । ସେହିଦିନଠାରୁ ଆଲାନ୍‌ଙ୍କୁ ଆଉ କେହି ଦେଖିଲେନାହିଁ । ତାଙ୍କର କଣ ହେଲା, କେହି ମଧ ଜାଣିଲେ ନାହିଁ । ଲୋକମୁଖରୁ ଶୁଣାଗଲା ଯେ, କେନେଥ୍ ତାର ସଙ୍ଗୀମାନଙ୍କ ସହ ତାଙ୍କର ଅନୁସରଣ କରି ଘଞ୍ଚ ଅରଣ୍ୟ ଭିତରେ ତାଙ୍କୁ ହତ୍ୟା କରିଥିଲା ।

ମେଣ୍ଟିଥ୍ ଗୁରୁତର ଆଘାତ ପାଇଥିଲେ ମଧ ମୃତ୍ୟୁମୁଖରେ ପଡ଼ିଲେ ନାହିଁ । ଲୌହ ସାଞ୍ଜୁ ତାଙ୍କୁ ରକ୍ଷା କରିଥିଲା । ବିବାହ ବନ୍ଦ ହେଲା । ସେ ଏବଂ ଆନଟ୍‌ଲୋଇଲ ସାର୍ ଡନ୍‌କାନ୍‌ଙ୍କ ସହ ତାଙ୍କ ଦୁର୍ଗକୁ ଗଲେ । ସପ୍ତାହକ ପରେ ଆରୋଗ୍ୟ ଲାଭକରି ସେ ଆନଟ୍‌ଲୋଇଲ୍‌ଙ୍କୁ ବିବାହ କଲେ ।

କିନ୍ତୁ ସେ ଆଉ ଯୁଦ୍ଧରେ ଯୋଗ ଦେଇପାରିଲେ ନାହିଁ । ତାପରେ ଯୁଦ୍ଧ ଶୀଘ୍ର ଶେଷ ହେଲା । ରାଜାଙ୍କ ରାଜଗାଦୀ ସୁଦୃଢ଼ ହେଲା । ମେଣ୍ଟିଥ୍ ତାଙ୍କ କାର୍ଯ୍ୟ ପାଇଁ ରାଜାଙ୍କଦ୍ୱାରା ପୁରସ୍କୃତ ହୋଇ ଆନଟ୍‌ଲାଇଲଙ୍କ ସହ ଆନନ୍ଦରେ ବାସ କଲେ ।

ସାର୍ ଡୋଗାଲ୍ଡ଼ ଦାଲ୍‌ଗେଟି ଯୁଦ୍ଧ ଶେଷ ପର୍ଯ୍ୟନ୍ତ ରାଜାଙ୍କ ପକ୍ଷରେ ଯୁଦ୍ଧ କଲେ । ଯୁଦ୍ଧ ଶେଷରେ ଏକ ଧନୀ ବିଧବାଙ୍କୁ ବିବାହ କରି ନିଜର ପିତୃ-ପିତାମହଙ୍କ ଜମିଦାରୀ ଅଧିକାର କଲେ । ତାଙ୍କ ଜୀବନର ଦୁଃସାହସିକ ଘଟଣାବଳୀ ବର୍ଣ୍ଣନା କରି ସେ ଦେଶରେ ଜଣେ ପ୍ରଖ୍ୟାତ ବ୍ୟକ୍ତି ହୋଇଥିଲେ ।

---

ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହି

## ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ବିଶ୍ୱବିଖ୍ୟାତ ଲେଖକମାନଙ୍କ ବହିର ଓଡ଼ିଆ ସାରାନୁବାଦ ସୁଲଭ ମୂଲ୍ୟରେ ସଂଗ୍ରହ କରି ପିଲାମାନଙ୍କୁ ପଢ଼ିବାକୁ ଦେଇ ସେମାନଙ୍କ ପଠନ ପ୍ରବୃତ୍ତି ବୃଦ୍ଧି କରନ୍ତୁ।

ଚାର୍ଲସ୍ ଡିକେନ୍ସ୍
ଆଲେକଜାଣ୍ଡର ଡୁମାଁ
ୱାଲଟର୍ ସ୍କଟ୍
ଭିକ୍ଟର ହ୍ୟୁଗୋ
ଏଚ୍. ରାଇଡ୍‌ର୍ ହାଗାର୍ଡ
ଲର୍ଡ ଲିଟନ୍
ମାର୍କ ଟୋୟେନ୍
ଚାରଲୋଟ୍ ବ୍ରଣ୍ଟେ
ଜୁଲ ଭାର୍ଣ୍ଣ
ଜୋନାଥନ୍ ସ୍ୱିଫଟ୍
ଆଣ୍ଟୋନି ହୋପ୍
ଆର୍. ଏଲ୍. ଷ୍ଟିଭେନ୍‌ସନ
ୱାଂସିଟନ୍ ଇରଭିଙ୍ଗ
ଆର୍. ଏମ୍: ବାଲାଣ୍ଟାଇନ
ଏଚ୍. ଜି ୱେଲସ୍
ଅଲିଭର୍ ଗୋଲଡ୍‌ସ୍ମିଥ୍
ଉଇଲିୟମ୍ ଥାକେରି
ଆର୍. ସବାଟିନି
ସର୍‌ଭେଣ୍ଟିସ୍
ଜେନ୍ ଅଷ୍ଟିନ୍
ଯୋଶେଫ୍ କୋନାର୍ଡ଼
ଆର୍ଥର୍ କୋନାନ୍‌ଡୟଲ
ଉଇଲ୍‌କି କୋଲିନ୍‌ସ
ଜି. ଏ. ହେଣ୍ଟି
ଥୋମାସ୍ ହାର୍ଡି
ଡାନିଏଲ୍ ଡିଫୋ
ବ୍ଲାକ୍‌ମୋର୍
ଜର୍ଜ ଇଲିଅଟ
ସେକ୍‌ସପିଅର
ଲିଓ ଟଲଷ୍ଟୟ
ଚେକଭ୍
ହୋମର୍
ଗର୍କି
ମୋପାସାଁ
ଗ୍ରୀମସ୍
ଆଣ୍ଡରସନ
ବଙ୍କିମଚନ୍ଦ୍ର
ଶରତ୍‌ଚନ୍ଦ୍ର
କାଳିଦାସ
ଶୁଦ୍ରକ
ପ୍ରେମଚାନ୍ଦ
ଫକୀରମୋହନ
ଜାତକ କାହାଣୀ
ମହାଭାରତ କାହାଣୀ
ରାମାୟଣ କାହାଣୀ
କଥାସରିତସାଗର
ହିତୋପଦେଶ କାହାଣୀ
ପଞ୍ଚତନ୍ତ୍ର କାହାଣୀ

ପ୍ରକାଶକ : ଗ୍ର ନ୍ଥ ମ ନ୍ଦି ର, ବିନୋଦବିହାରୀ, କଟକ-୨